ପ୍ରାଚୀ ଗ୍ରନ୍ଥମାଳା ଅଷ୍ଟାଦଶ

# ଗୁରୁଭକ୍ତି ଗୀତା

## ୨




ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରାଚୀ ଗ୍ରନ୍ଥମାଳା—ଅଷ୍ଟାଦଶ

# ଗୁରୁଭକ୍ତି ଗୀତା

(ଦ୍ୱିତୀୟ ଖଣ୍ଡ)

---

ପ୍ରଧାନ ସଂପାଦକ—

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

# ଗୁରୁଭକ୍ତିଗୀତା

(ଦ୍ୱିତୀୟ ଖଣ୍ଡ)

**ଅଚ୍ୟୁତାନନ୍ଦ ଦାସଙ୍କ କୃତ**

ଟୀକା ଓ ମୁଖବନ୍ଧ ସହ

**ପ୍ରାଚୀ ସମିତି ଦ୍ୱାରା**

ସଂକଳିତ ଓ ପ୍ରକାଶିତ



ମୂଲ୍ୟ ଆଠଅଣା ମାତ୍ର

# ଗୁରୁଭକ୍ତି ଗୀତା

( ଦ୍ୱିତୀୟ ଖଣ୍ଡ )

ଅଚ୍ୟୁତାନନ୍ଦ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

ପ୍ରାଚୀ ସମିତି ଦ୍ୱାରା

ସଙ୍କଳିତ




ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର

ଦ୍ୱିତୀୟ ମୁଦ୍ରଣ

୧୯୭୦

ଏକଟଙ୍କା ପଚିଶ ପଇସା ମାତ୍ର

# ମୁଖବନ୍ଧ

ଗୁରୁଭକ୍ତି-ଗୀତା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ କୃତିମାନଙ୍କ ମଧ୍ୟରୁ ଏକତମ । ଏହା ଏକ ବୃହତ୍ ଗ୍ରନ୍ଥ ଏବଂ ତିନୋଟି ଭାଗ ବା ଖଣ୍ଡରେ ବିଭକ୍ତ । ଆଲୋଚିତ ଗ୍ରନ୍ଥଟି ଦ୍ୱିତୀୟ ଖଣ୍ଡ ଅଟେ । ଏହା ଅଠର ଗୋଟି ପଟଳ ବା ଅଧ୍ୟାୟରେ ବିଭକ୍ତ । ଏଥିରେ ଶିଷ୍ୟମାନେ ଗୁରୁ ସ୍ତବରେ ନାନା ଜିଜ୍ଞାସା ଏବଂ ଅତୀତ ଭବିଷ୍ୟତର ବିଷୟ ପଚାରିଅଛନ୍ତି ଏବଂ ଗୁରୁ ଶିଷ୍ୟମାନଙ୍କ ମନ ଜାଣି ସେହି ପ୍ରଶ୍ନମାନଙ୍କର ସଦୁତ୍ତର ପ୍ରଦାନ କରିଅଛନ୍ତି । ସେ ପ୍ରଶ୍ନୋତ୍ତରର ଅବତାରଣା କରିବା ପୂର୍ବରୁ ଗ୍ରନ୍ଥରୁ ପ୍ରାପ୍ତ ଶିଷ୍ୟମାନଙ୍କର ନାମ ଧାମ ଓ କୁଳଶୀଳାଦିର ପରିଚୟ ପ୍ରକାଶ କରିବା ଉଚିତ ।

ରାମଚନ୍ଦ୍ର, ଉତ୍ଥାନ, ପତନ, ମୁକୁନ୍ଦ, ଅନନ୍ତ, ବସୁ, ଯାଦବ, ଆନନ୍ଦ, ବାଳକ, ମଧୁ, ମଥୁରା, ଭୃଥ, ବିଷ୍ଣୁ, ସୁଦାମ, ଚୋବନ୍ଦ, ବନ୍ଦଦାସ, ଯଦୁ, ବୃନ୍ଦାବନ, ବେଣ, ମୁରାରି, ଗୋପାଳ ମାଧବ, ଯୁଦ୍ଧିଷ୍ଠି ଦାସ, ନରସିଂହ, ଗୋକୁଳଚନ୍ଦ୍ର, ବଇଁଶୀ ଦାସ, ହରିହର, କରିଆ ହରିଦାସ, ସାହାଣୀ ଗୋପାଳ ଓ ପ୍ରେମା ଗୋପାଳ ପ୍ରଭୃତି ଶିଷ୍ୟମାନଙ୍କର ନାମ ଏକାଧିକ ବାର ଗ୍ରନ୍ଥର ବିଭିନ୍ନ ପଟଳ ବା ଅଧ୍ୟାୟରେ ପ୍ରସଙ୍ଗକ୍ରମେ କଥିତ ହୋଇଅଛି । ଏହି ଶିଷ୍ୟମାନେ ଗ୍ରନ୍ଥର ବିଭିନ୍ନ ସ୍ଥାନରେ ସେମାନଙ୍କ ଗୁରୁଦେବ ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ ନାନାପ୍ରକାର ପ୍ରଶ୍ନ କରିଅଛନ୍ତି ଏବଂ ମହାପୁରୁଷ ଯଥୋଚିତ ଉତ୍ତର ଦେଲାବେଳେ ସେମାନଙ୍କୁ ଯେଉଁ ଧରଣର ସମ୍ବୋଧନ କରିଅଛନ୍ତି, ସେଥିରୁ କେତେ ଶିଷ୍ୟଙ୍କର ଜାତିକୁଳ ସହଜରେ ନିର୍ଣ୍ଣୀତ ହୋଇଯାଏ । ଅଧିକାଂଶ ସ୍ଥଳରେ ସକଳ ଶିଷ୍ୟଙ୍କୁ 'ବରଜ ଗୋପାଳ', ଗୋପାଳକୁଳ' ପ୍ରଭୃତି ଶବ୍ଦରେ ବିଶ୍ଲେଷିତ ଦେଖି ଯେଉଁମାନେ ତାଙ୍କର ଶିଷ୍ୟ-ସମ୍ପ୍ରଦାୟଙ୍କୁ ଏବଂ ଶେଷରେ ସ୍ୱୟଂ ମହାପୁରୁଷଙ୍କୁ ମଧ୍ୟ ଗଉଡ଼ ଜାତିର ଅନ୍ତର୍ଭୁକ୍ତ କରିପକାନ୍ତି, ସେମାନଙ୍କର ବିଷୟ ପଣ୍ଡିତ ଅଭ୍ରାନ୍ତ ନୁହେଁ । ଗୁରୁଭକ୍ତି ଗୀତାର ଦ୍ୱିତୀୟ ଖଣ୍ଡର ସମ୍ୟକ୍ ଆଲୋଚନା କଲେ ଜଣାଯାଏ ଯେ, ଅଚ୍ୟୁତାନନ୍ଦ ବିଭିନ୍ନ ଜାତିର ଲୋକଙ୍କୁ ଶିଷ୍ୟରୂପେ

ଭ୍ରମଣ କରିଥିଲେ । ସେହି ବିଭିନ୍ନ ଜାତିର ଶିଷ୍ୟମାନଙ୍କ ମଧ୍ୟରେ ଜଣେ ରାମଦାସ କୁମ୍ଭାର, ଆଉଜଣେ ରାମ କମାର, ଜଣେ ବନ୍ଧୁ କମାର ଓ ଜଣେ ନାରଣ କମାର ଜାତିର ଲୋକ ଥିଲେ । ଏହି ଶିଷ୍ୟମଣ୍ଡଳୀ ମଧ୍ୟରେ ବାରଗୋଟି ଶିଷ୍ୟ ପ୍ରଧାନ ଥିଲେ । ସେମାନଙ୍କ ସହାୟତାରେ ଉତ୍କଳରେ ରାସଲୀଳା ରଚନା ଏବଂ ମୂଢ଼ ଗୋପାଳମାନଙ୍କୁ ସତ୍‌ପଥକୁ ଅନୁସନ୍ଧାନ ଓ ମୁକ୍ତି ପଥ ପ୍ରଦର୍ଶନ କରିବା ପାଇଁ ମହାପୁରୁଷ ମାନବ ବିଗ୍ରହ ଧାରଣ କରିଥିଲେ—ଏହା ତାହାଙ୍କର ଶ୍ରୀମୁଖ ଉକ୍ତି । ସେହି ବାର ପ୍ରଧାନ ଶିଷ୍ୟଙ୍କର ନାମ, ଯଥା :—ମୁକୁନ୍ଦ, ଅନନ୍ତ, ବସୁ, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଧୁସ୍ତ, ଉଦ୍ଧବ, ଗୋବିନ୍ଦ ଓ ବୃନ୍ଦାବନ । ଗୋପାଳ ଜାତିକୁ ସଦୁପଦେଶ ଦେଇ ସତ୍‌ପଥକୁ ଆଣିବାପାଇଁ ମହାପୁରୁଷ ଏକାଧିକବାର ଶିଷ୍ୟମାନଙ୍କୁ ଉପଦେଶ ଦେଇ ଅଛନ୍ତି ଯଥା :—

* * *

'ବିଷ୍ଣୁଦାସ ଗଣେ ତୁମ୍ଭେ ହେତୁ ମନେ ଧର
ପାଷାଣ୍ଡ ଗୋପାଳ କୁଳେ ଜନ୍ମ ଅବତାର'

—୧୪ ପଟଳ

'ବିଷ୍ଣୁ ଅଂଶ ନାହାନ୍ତି ତ ବଇରାଗି ଜନେ
ଏଥି ପାଞ୍ଚ ଅଂଶ ଛନ୍ତି ଅନ୍ୟ ଅଂଶ ମାନେ
କର ଭିକ୍ଷାକୁ ସେ ଯେଣୁ କରିଥିବ ମନ
ମୂଢ଼ ଯେ ଗଉଡ଼ ଘରେ ବୁଲୁଥିବ ପୁଣ
କେତେ ଗୋପାଳର ଘରେ ବୁଲୁଥିବ ନିତି'

* * * *

—୧୫ ପଟଳ

ପ୍ରୋକ୍ତ ଶିଷ୍ୟମଣ୍ଡଳୀ ମଧ୍ୟରୁ 'ପଞ୍ଚଶାଖା' ମହାପୁରୁଷଙ୍କର ନିଜ ଅଂଶ ବୋଲି କଥିତ ହୋଇଅଛନ୍ତି । ସେମାନଙ୍କର ନାମଧାମ ଓ କାର୍ଯ୍ୟକେନ୍ଦ୍ର ଗ୍ରନ୍ଥରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ଯଥା—ରାମଚନ୍ଦ୍ର ଦାସ ପ୍ରଥମ ଶାଖା, ଏବଂ ଚଉପୋଖରୀ ନିକଟବର୍ତ୍ତୀ ନେମ୍ବାଳ, ନିକଟସ୍ଥ ଉତ୍ପତ୍ତି ସ୍ଥାନ ଦ୍ୱାରଗ୍ରାମ ଏବଂ

ତାନେଶ୍ୱର ବନ ତାଙ୍କର ପୀଠ ଓ କାର୍ଯ୍ୟ କେନ୍ଦ୍ର । ଭୃଅବାର ଦ୍ୱିତୀୟ ଶାଖା ଏବଂ ଖଣ୍ଡିର ବନ ତାଙ୍କର ପୀଠ ଓ କାର୍ଯ୍ୟକେନ୍ଦ୍ର । ବଳ ଦାସ ତୃତୀୟ ଶାଖା ଏବଂ ଚନ୍ଦ୍ରଭାଗା ଓ ସଙ୍କରସ ଗ୍ରାମ ତାଙ୍କର ପୀଠ । ଧର୍ମ ଚତୁର୍ଥ ଶାଖା ଏବଂ ବୃଷଭଦ୍ରା ନଦୀକୂଳ, ଏକାମ୍ର କାନନ, ବିନ୍ଦୁ ସାଗର ଓ ଧାଇଲେ ଆଦି ତାଙ୍କର ପୀଠ । ବିଷ୍ଣୁ ଦାସ ପଞ୍ଚମ ଶାଖା ଏବଂ ବନଖଣ୍ଡି, ହେମବନ, ଓ ସୁନପୁର ତାଙ୍କର ସ୍ଥାନ ।

"ଏହି ପଞ୍ଚଶାଖା ମୋର ଅଟେ ନିଜ ଅଂଶ
ଭାରତ ଗୋପାଳ କୂଳ ଓଡ଼ିଶା ଯେ ଦେଶ"

ଏହା ମହାପୁରୁଷଙ୍କ ସ୍ୱମୁଖ ଉକ୍ତି ଏବଂ ଏଥିରେ ଅବିଶ୍ୱାସ କରିବାର ସେପରି କୌଣସି କାରଣ ନାହିଁ ।

ଅଚ୍ୟୁତଙ୍କର ଶିଷ୍ୟସଂଖ୍ୟା ଷୋଳସହସ୍ର—ଏହା ତାଙ୍କର ନିମ୍ନଲିଖିତ ଉକ୍ତିରୁ ଜଣାପଡ଼େ । ଯଥା :—

'ରସିବ ଯେ ବାରସହସ୍ରେ ବାରଷ୍ଟିଆ ସାର
ଗୁଣସପ ଯୋଗାରୁଢ଼ ପଞ୍ଚସଖାଙ୍କର
ଏଣୁକରି ଅଚ୍ୟୁତର ଷୋଳସହସ୍ର ଶାଖା
ଯୁଗେ ଯୁଗେ ଅନନ୍ତଙ୍କୁ ଭଗତରେ ଲେଖା'

ଗ୍ରନ୍ଥର ଅନ୍ୟତ୍ର ମହାପୁରୁଷ ରାମଦାସ ଏବଂ ତାର ପ୍ରଧାନ ଶିଷ୍ୟଙ୍କୁ ନିମ୍ନଲିଖିତ ପ୍ରକାରେ କହିଅଛନ୍ତି । ଯଥା—

'ଷୋଳ ସହେ ସାର ବାରଷ୍ଟିଆ ରାମ ଦାସ
ବାରଦାସେ ସାର ସପ୍ତ ଶାଖା ଅଟେ ଅଂଶ
ସପ୍ତଶାଖା କଣ ସାର ପଞ୍ଚଶାଖା ପୁଣ
ପଞ୍ଚଶାଖା ସାର ପୁଣ ଅଚ୍ୟୁତର ଗଣ'

ଅର୍ଥାତ୍ ଷୋଳସହସ୍ର ଶିଷ୍ୟଙ୍କ ମଧ୍ୟରୁ ରାମଦାସଙ୍କ ନେତୃତ୍ୱରେ ବାରଜଣ ଶିଷ୍ୟ ପ୍ରଧାନ । ସେମାନଙ୍କ ମଧ୍ୟରେ ସପ୍ତଶାଖା ସାର । ସେହି ସପ୍ତଶାଖାଙ୍କ ମଧ୍ୟରେ ପଞ୍ଚଶାଖା ସାର ଏବଂ ସେମାନଙ୍କ ତତ୍ତ୍ୱ

ପୂର୍ବରୁ କଥିତ ହୋଇଅଛି । ସେହି ପଞ୍ଚଶାଖାଙ୍କ ମଧ୍ୟରେ ଅଚ୍ୟୁତ ସ୍ୱୟଂ ସାର ଅଟନ୍ତି । ଦ୍ୱାପର ଯୁଗରେ ତାଙ୍କର ନାମ ସୁଦାମା ଗୋପାଳ, ତ୍ରେତୟାରେ ନଳ, ସତ୍ୟ ଯୁଗରେ କୃପାଜଳ, ଅନନ୍ତ ଯୁଗରେ ଶୁଭନନ୍ଦ ଗୋପାଳ ଥିଲ । ଯୁଗେ ଯୁଗେ ତାଙ୍କ ସଙ୍ଗେ ପ୍ରଭୁଙ୍କ ନେତୃତ୍ୱରେ ବାରଦାସ ରାସଲୀଳା କରିବାକୁ ଜାତ ହୋଇଥାନ୍ତି । ଅନନ୍ତ ଯୁଗରେ ପ୍ରଭୁଙ୍କ ସହିତ ସେମାନେ ତାଳ ବଜାଉଥିଲେ, ସତ୍ୟ ଯୁଗରେ ନୈମିଷାରଣ୍ୟରେ ଗୁପ୍ତବେଶ ଧରି ମୁନିମାନଙ୍କ ସହିତ ନାମକୀର୍ତ୍ତନ କରୁଥିଲେ । ତ୍ରେତୟା ଯୁଗରେ ପ୍ରଭୁଙ୍କ ରାବଣଠାରେ ହନୁ ଏ ନଳ-ନୀଳଙ୍କ ସଙ୍ଗେ ତାଣ୍ଡବ ନୃତ୍ୟ କରୁଥିଲେ । ଦ୍ୱାପର ଯୁଗରେ ରାସଲୀଳା ସେମାନଙ୍କର କାର୍ଯ୍ୟ ହୋଇଥିଲା । କଳି ଯୁଗରେ ଯେତେବେଳେ ଶ୍ରୀକୃଷ୍ଣଚୈତନ୍ୟ ଅବତୀର୍ଣ୍ଣ ହେଲେ, ସେତେବେଳେ ସେ ସେମାନଙ୍କୁ ଖୋଳ କରତାଳ ହେଲେ । ଏହିଠାରେ ମହାପୁରୁଷ କହିଅଛନ୍ତି—

‘ସେ ତୁମ୍ଭଙ୍କୁ ଦେଲେ ଖୋଳ କରତାଳ ଦେଣୁ
ଓଡ଼ିଶାରେ ବାରହାସ ରହିଲ ତୁମ୍ଭେ ତେଣୁ
ପ୍ରତାପର ଆଗ୍ରେ ଗଲେ ପିତାଙ୍କର ବଳେ
ବାରହାସ ରହିଲୁ ଅମ୍ଭେ ଓଡ଼ିଶା ଦେଶରେ’

ଯେଉଁ ବହୁଇବାଦମାନେ ଅଚ୍ୟୁତାନନ୍ଦଙ୍କୁ ଜାତିରେ ଗଉଡ଼ ବୋଲି ମତ ପୋଷଣ କରନ୍ତି, ସେମାନଙ୍କର ମନେ ରଖିବା ଉଚିତ ଯେ—ମହାପୁରୁଷ ତାଙ୍କ ଗ୍ରନ୍ଥମାନଙ୍କ ଭିତରେ କେଉଁଠାରେ ଆପଣଙ୍କୁ ଗଉଡ଼ ବୋଲି କହି ନାହାନ୍ତି । ସେ ଅମ୍ଭ ପରିଚୟ ଦେବାକୁ ଯାଇ ବଳେନନ୍ଦନ, ନନ୍ଦକୁଳ ପ୍ରଭୃତି ଯେଉଁ କେତେକ ଶବ୍ଦ ପୁନଃ ପୁନଃ ପ୍ରୟୋଗ କରି ଅଛନ୍ତି, ସେଥିରୁ ଜଣାଯାଏ ଯେ ସେ ବ୍ରଜଅଂଶରେ ଜନ୍ମଗ୍ରହଣ କରିଥିଲେ । ମହାପୁରୁଷଙ୍କର ନିମ୍ନ ଲିଖିତ ସ୍ୱମୁଖ ଉକ୍ତିକୁ ବିଶ୍ଳେଷଣ କରି ଦେଖିଲେ ଅମ୍ଭମାନଙ୍କର ଉକ୍ତ ଉକ୍ତି ଯେ ନିଗୂଢ଼ ସତ୍ୟ, ଏହା ସମସ୍ତେ ହୃଦୟଙ୍ଗମ କରି ପାରିବେ !

‘ଜନ୍ମେ ଜନ୍ମେ ମୁହିଁ ପୁଣ ଭୃତ୍ୟ ପଣେ ଥିଲି
ପୂର୍ବ ଜନ୍ମେ ଗୋପାଳ କୁଳରେ ଜନମିଲି

ଲୀଳାକୁ ଲୀଳା ସେ କରିଁ ବିଲୋଚନେ ଜାତ
କେଶବ ନାମ ବହିବ ବିରଜା ଦେଶେ ତ
ମୋହର ଅଂଶରୁ ଅଂଶ ଅଣଶରୁ ଜାତ
ନାମ ନାହିଁ ଅନାମରେ ନାମ ମୋ ଅଚ୍ୟୁତ ॥'

—୧୭ଶ ପଟଳ

ଗୁରୁଭକ୍ତ ଗୀତାର ଏହି ଦ୍ୱିତୀୟ ଖଣ୍ଡରେ ପ୍ରଶ୍ନୋତ୍ତର ଛଳରେ ଯେଉଁ ବିଷୟମାନ ବର୍ଣ୍ଣିତ ହୋଇଅଛି, ସେ ପ୍ରସଙ୍ଗରେ ସୁବିସ୍ତୃତ ଆଲୋଚନା କରିବାକୁ ବର୍ତ୍ତମାନ ଏ କ୍ଷେତ୍ର ପ୍ରଶସ୍ତ ନୁହେଁ । ପୂର୍ବରୁ କଥିତ ହୋଇଅଛି ଯେ, ଗ୍ରନ୍ଥଟି ୧୮ ଗୋଟି ପଟଳ ବା ଅଧ୍ୟାୟରେ ଶୃଙ୍ଖଳିତ । ସେଥି ମଧ୍ୟରୁ ପ୍ରଥମ ପଟଳରେ କର୍ମବିଧି କଥନ, ଦ୍ୱିତୀୟ ପଟଳରେ ଧ୍ୟାନବିଧି କଥନ, ତୃତୀୟ ପଟଳରେ ପୂଜା-ବିଧି କଥନ, ଚତୁର୍ଥ ପଟଳରେ ତିଳକବିଧି ନିର୍ଣ୍ଣୟ, ପଞ୍ଚମ ପଟଳରେ ମାଳା ନିର୍ଣ୍ଣୟ ଓ ଭଜନ ବିଧି, ଷଷ୍ଠ ପଟଳରେ ମାଳା ସଂଖ୍ୟା ନିରୂପଣ, ସପ୍ତମ ପଟଳରେ ଧ୍ୟାନ ଯୋଗ କଥନ, ଅଷ୍ଟମ ପଟଳରେ ବ୍ରହ୍ମସ୍ୱରୂପ କଥନ, ନବମ ପଟଳରେ ଜ୍ୟୋତିବିଧି କଥନ, ଦଶମ ପଟଳରେ କଳିବିଧି ବ୍ୟବହାର କଥନ, ଏକାଦଶ ପଟଳରେ ନିର୍ଗୁଣ ସଂବାଦ ଯୋଗ କଥନ, ଦ୍ୱାଦଶ ପଟଳରେ ଅନାଦି ମନ୍ତ୍ର ତତ୍ତ୍ୱଭେଦ ନିର୍ଣ୍ଣୟ, ତ୍ରୟୋଦଶ ପଟଳରେ ତନ୍ତ୍ରଭେଦ ଓ ବଂଶାନୁ-ଚରିତ କଥନ ଚତୁର୍ଦ୍ଦଶ ପଟଳରେ ମନ୍ତ୍ରାଦି ମହୋତ୍ସବ ବିଧି କଥନ, ପଞ୍ଚଦଶ ପଟଳରେ ମନ୍ତ୍ରଭେଦ କଥନ, ଷୋଡ଼ଶ ପଟଳରେ ଗୁରୁଶିଷ୍ୟ ବୋଧନ, ସପ୍ତଦଶ ପଟଳରେ ଯୁଗବଂଶାନୁ ଚରିତ ଓ ଲୀଳା ବର୍ଣ୍ଣନ ଏବଂ ଅଷ୍ଟାଦଶ ପଟଳରେ ପୂଜାବିଧି ନିର୍ଣ୍ଣୟ ବର୍ଣ୍ଣିତ ହୋଇଅଛି । ଗ୍ରନ୍ଥୋକ୍ତ ତନ୍ତ୍ରର ବିଗ୍ରହ ଏବଂ ସ୍ଥାନ ମାନଙ୍କର ଆଧୁନିକ ନାମ ଓ ଅବସ୍ଥିତି ବିଷୟ ସମୁଦାୟ ଗ୍ରନ୍ଥର ପ୍ରକାଶ ପରେ ସ୍ୱତନ୍ତ୍ର ସ୍ଥଳେ ଲିଖିତ ହେବ । ଇତି ।

ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ.

—⁂—

ଓଁ

# ଶ୍ରୀଗୁରୁଭକ୍ତିଗୀତା

## ଦ୍ୱିତୀୟଖଣ୍ଡ

### ପ୍ରଥମ ପଟଳ

ଶ୍ରୀ ଗଣେଶାୟ ନମଃ । ଅବିଘ୍ନମସ୍ତୁ ।

କହୁଅଛୁ ଅଚ୍ୟୁତ ରୁ ଶୁଣ ଗୋପସୁତ ।
ରାମଚନ୍ଦ୍ର ଦାସ ତୁଲେ ବାର ଗୋପାଳ ତ ॥
ବରଣ କରଣ ଆଣ କୁଣ୍ଡ୍ରବଳଦାକୁ ।
ସାଇବର ବୋଲି ଦେଶ ଏହୁ ସେ ଗ୍ରାମକୁ ॥
ଆଜ୍ଞା ପାଇଁ ରାମଚନ୍ଦ୍ର ସଦୁଦାସ ରାଇ ।
ଆଜ୍ଞା ପରମାଣେ ଯାଅ ସାରଦା ଦେଶଇ ॥
ରହାସ ଗୋପାଳ ତୁମ୍ଭେ ଅଣିମ ସେ ସ୍ଥାନ ।
ଶ୍ରୀକୃଷ୍ଣର ଯାତ୍ରା ତହିଁ ହେବ ପ [illegible]ଦନ ॥
ଶ୍ରୀଗୁରୁ ପରମଗୁରୁ ଆଜ୍ଞା ଘେନ ଚଳି ।
ସାରଦା ମଣ୍ଡଳେ ବାର ଗୋପାଳ ସେ ମିଳି ॥
କହିଲେ ଗୁରୁଙ୍କ ଆଜ୍ଞା ତୁମ୍ଭଙ୍କ ବରଣ ।
କୁଣ୍ଡଗ୍ରାମେ ଯିବା ସାଜ ତୁମ୍ଭେ ରାସଗଣ ॥
ହରିଆନ ପବନ ସେ ମୁକୁନ୍ଦ ଅନନ୍ତହିଁ ।
ବସ୍ତ୍ର ସେ ମାଧବ ଆନନ୍ଦ ବାଳକ ତହିଁ ॥

ମଧୁ ଯେ ମଥୁଶ୍ର ଏତେ ଜନଙ୍କୁ କହିଲେ ।
ପୀତାମ୍ବରପୁରେ ଯାଇଁ ପ୍ରବେଶ ହୋଇଲେ ॥
ଭୃଥଦେବ ବିଷ୍ଣୁଦେବ ସୁଦାମ ଗୋବିନ୍ଦ ।
ଆଜ୍ଞା ଦେଇଛନ୍ତି ମୋତେ ଶ୍ରୀ ଅଚ୍ୟୁତାନନ୍ଦ ॥
ତହୁଁ ଚଳି ବନ୍ଦଦାସ ଧର୍ମଦାସ କହୁ ।
ଦଶମୀ ବୈଶାଖମାସେ ମିଳିବେ ସେ ଯାଇଁ ॥

ଯଦୁଦାସ ଶିଷା ଘେନି ଦଶମୀ ଦିନରେ ।
ପ୍ରବେଶ ହୋଇଲେ ଯାଇଁ ଆନନ୍ଦ ମନରେ ॥
ପାଞ୍ଚଦିନ ରଙ୍ଗ ରସ ଆନନ୍ଦ ରହସ ।
ରାସ ସାନ୍ଧି ପ୍ରବେଶ ଭଜନ କୃଦ ଦେଶ ॥

ନୀଳଗିରି କୁଦେ ଦିନେ କଲେକ ରହିଣି ।
ଆନନ୍ଦ ରହସେ ତହିଁ ପୁହାଇ ରଜନୀ ॥
ପ୍ରାତକାଳେ ସର୍ବେ ସ୍ନାନ କଲେକ ଯତନେ ।
ସୂର୍ଯ୍ୟଙ୍କୁ ଜଳ ଦେଇଣ ସ୍ତୁତିବାକ୍ୟ ମନେ ॥
କେହୁ ବୋଲଇ ସୂର୍ଯ୍ୟ ତ ବ୍ରହ୍ମାଣ୍ଡଧାରଣ ।
ପୃଥିବୀ ରକ୍ଷଣହିଁ ତ ତୃପ୍ତ ଜ୍ୟୋତି ପୁଣ । ୧୫ ।

ଋଷି ବିପ୍ର ବଇଷ୍ଣବ ତୁମ୍ଭଙ୍କୁ ବନ୍ଦିଣ ।
ଜଳେ ସ୍ନାନ ଶୌଚରେ ହୁଅନ୍ତି କାରଣ ॥
ସ୍ନାନ ସାରି କୂଳେ ବସି କମଳଆସନେ ।
ପୂର୍ବମୁଖେ ବସି କଲେ ଭଜନ ଯତନେ ॥
କୃଷ୍ଣରୂପ ଲଏ କରି ବସିଲେ ଆସନେ ।
ସୁମରଣ ମନ୍ତ୍ର ଧ୍ୟାନ ହୃଦରେ ଯତନେ ॥

ଚରଣ ଗୋପାଳ ଦଣ୍ଡବତ ଅଷ୍ଟାଙ୍ଗରେ ।
ପଞ୍ଚାଙ୍ଗକୃତ ଅଞ୍ଜଳି ପ୍ରଣିପତ୍ୟ କରେ ॥
ରହାସ ଗୋପାଳ ଯେ ଉତ୍‌ଥାନ ପଗୃଲେ ।
ସ୍ନାହାନ ଭୋଜନ ଆଜ୍ଞା ହୋଇବ ସେ ମୋରେ ॥

ଶ୍ରୀମୁଖରୁ ଶୁଣିଲେ ଯଶସ୍ୱୀ ଆତ୍ମ ଯିବ ।
ବାରଗୋଟି ଦାସ ମନ୍ତୁଁ ବିଭୋର ନ ଯିବ ।।
ତୁମ୍ଭ ଆଜ୍ଞା ଘେନ ଆମ୍ଭେ ସର୍ବଠାରେ ଥିବୁ ।
ଜନମାନେ ପଚ୍ଛରିଲେ ତାଙ୍କୁ ବୁଝାଇବୁ ।।
ଶୁଣ ହୋ ଉତ୍‌ଥାନ ଦାସ ସ୍ନାହାନ ବିଧାନ ।
କାଳ ଶବ ଦଅନ୍ତେଣ ଉଠିବ ବନ୍ଦନ ।।

ପଥ ଚଳିବାକୁ ମନ୍ତ୍ର ଗୋଟିଏ ଭଜିବ ।
ଜଳ ପରସ୍ରାବ ଦୂର ମନ୍ତ୍ର ସୁମରିବ ।।
ଜଳେ ମୁଖ ପ୍ରକ୍ଷାଳଣ ମୃତ୍ତିକା ହସ୍ତରେ ।
ତିନିବାର ସପ୍ତବାର ମୃତ୍ତିକା ବିଧିରେ ।।

ତେବେ ମନଦୋଷ ହରେ ଶୁଣ ହୋ ଉତ୍‌ଥାନ ।
ଏମନ୍ତ ବିଧିରେ କରୁଥିବ ଦନ୍ତଧନ ।
ଉତ୍ତରଦିଗକୁ ମୁଖ କରିବ ପ୍ରଭାତେ ।
ଡାହାଣ ଦିଗକୁ ସୂର୍ଯ୍ୟ ରହିବ ଯେମନ୍ତେ ।।
ସୂର୍ଯ୍ୟଙ୍କୁ ସମ୍ମୁଖ କରି ବସିଲେଣ ଦର୍ପ ।
ବଇଷ୍ଣବ ବିପ୍ରଜନ ଅଂଶ ଯେତେ ଋଷି ।।

ଅଣ ଯେ ଉଦୟ ଯେବେ ସୂର୍ଯ୍ୟ ହୋଇଥିବ ।
ପର୍ବଦିଗେ ମୁଖକରି ଦନ୍ତ ଯେ ଘଷିବ ।।
ଉଦୟ ହୋଇଲେ ମୁଖ ଉତ୍ତରକୁ କରି ।
ଦକ୍ଷିଣେ ପଶ୍ଚିମେ ମୁଖ କେବେହେଁ ନ କରି ।।
ଆମ୍ର ପତ୍ର ନ ତୋଳିବ ପଡ଼ିଲେ ଘଷିବ ।
ଅପମାର୍ଗ, କୁମ୍ଭାରୁଆ, ଦରଓଲ, ଲିମ୍ବ ।।

କରଞ୍ଜ ଯେ ଉଦୁମ୍ବର ଏ ଶୁଖ ଅଟଇ ।
ଯେ ଯାହାକୁ ରୁଚିବ ଯେ ରକ୍ଷିଥିବ ନେଇ ।।
ଜଳେ ପଶି ସ୍ନାହାନ କରିବ ସୂର୍ଯ୍ୟ ଦୃଷ୍ଟି ।
ଅନନ୍ତ ମୂରତି ରୂପ ଜଳେ ପ୍ରକାଶଇ ।।

ନାରାୟଣ ମୂରତି ସେ ଜଲେ ସୁମରନ୍ତି ।
ପୂର୍ବେ ହୃଦେ ହୋଇଣ ସେ ପଶ୍ଚିମକୁ ଯାନ୍ତି ॥
ଏଣୁ କରି ଜଲେ ପଶି କରିବ ସ୍ନାହ୍ୱାନ ।
ସେ ରୂପକୁ ସ୍ୱହ୍ନେଁ ତାଙ୍କୁ କରିବ ସ୍ମରଣ
ମାନସିକ ଭାବେ ତାଙ୍କୁ ସ୍ନାହ୍ୱାନ କରାଇ ।
ତାଙ୍କ ଗୁଣମାନ ସୁମରିବ ଜଲେ ଥାଇ ॥
ତାଙ୍କ ରୂପ ଧାଇ ସେଉଁମାନଙ୍କ ଭଜନ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ତାଙ୍କ ପାଦେ ଲୀନ ॥
ଏଣୁକରି ହୃଦେ ସନ୍ଧ୍ୟା ବୈଷ୍ଣବର ଦୃଢ଼ ।
ନ ପାରନ୍ତି ଗୃହୀଜନେ ବିଷୟ ଝଗଡ଼ ॥
ଶୁଣ ହେ ହନୁଥାନ ଦାସ ଗୁରୁଭକ୍ତି ରସ ।
ଗୁରୁଭକ୍ତିଗୀତା ଏ ଦ୍ୱିତୀୟ ଖଣ୍ଡ ପରକାଶ ॥
ପ୍ରଥମ ଛାନ୍ଦ ଏ କର୍ମବନ୍ଧ ଦେଲୁ କନ୍ଧ ।
ତ୍ରୁଟି ହେଉ କର ବାଲୁ ଅଚ୍ୟୁତ କହଇ ॥ ୮୦ ॥

ଇତି ଶ୍ରୀ ଗୁରୁଭକ୍ତିଗୀତା ଦ୍ୱିତୀୟଖଣ୍ଡେ ଶିଷ୍ୟବୋଧନେ
କର୍ମବନ୍ଧକଥନେ ନାମ ପ୍ରଥମ ପଟଳ ।



## ଦ୍ୱିତୀୟ ପଟଳ

କରପଟ ଯୋଡ଼ିଣ ସେ ରାମଚନ୍ଦ୍ର କହୁ ।
ଜଳର ତଳକଣ୍ଠ କହୁବା ବୁଝାଇ ॥

ପ୍ରଥମରେ କଚ୍ଛ ଜଳ ହସ୍ତରେ ଘେନବ ।
ଅଣାକାର ବିନ୍ଦୁରେ ସେ ପିଣ୍ଡ ପକାଇବ ॥

ଅର୍ଦ୍ଧ ବିନ୍ଦୁ ଉପରେ ତଳକ ବିନ୍ଦୁ ଦେଇ ।
ଅର୍ଦ୍ଧ ବିନ୍ଦୁ କଣ୍ଠେ ଦଅ ଷୋଳକ୍ଷର ଧାଇ ॥

ଠଅବିନ୍ଦୁ ଦେବ ପୁଣ ଦ୍ୱାଦଶ ଦଳରେ ।
ସଅବିନ୍ଦୁ ବସିବ ସେ ଦଶ ପଖୁଡ଼ାରେ ॥

ଲ ଅକ୍ଷର ଅର୍ଦ୍ଧ ବିନ୍ଦୁ ଛଡ଼ ସେ ପାଖୁଡ଼ା ।
ସ ଅକ୍ଷର ଅର୍ଦ୍ଧ ବିନ୍ଦୁ ବସିବ ସେ ପୁତ୍ରା ॥ ୫ ॥

ଅର୍ଦ୍ଧ ମାତ୍ରା ଉପରେ ସେ ଚତୁର୍ଦ୍ଦଳ ଯାଏ ।
ଛଡ଼ ବିନ୍ଦୁ ବସିଅଛୁ ଲିଙ୍ଗଚକ ଦେହେ ॥

ଏଣୁକରି ସେ ବିନ୍ଦୁକୁ ତଳକେ ପୂଜିବ ।
ସଦଗୁରୁ ଦେଖାଇଲେ ଏ ଭେଦ ପାଇବ ॥

ଛଡ଼ ବିନ୍ଦୁ ଉପରେ ସେ ଅଣାକାର କହୁ ।
ସେ ବିନ୍ଦୁ ଚିହ୍ନିଲେ ସେ ନିସ୍ତାର ଗତ ପାଇ ॥

ବିନ୍ଦୁ ଭେଦ ନ ଜାଣନ୍ତି ଯେବଣ ସେ ଦାସ ।
ବିଧବା ଯୁବତୀ ପ୍ରାୟେ ହୋଇଯାନ୍ତି ନାଶ ॥

ବାମରେଖା ଲଲାଟରେ ବ୍ରହ୍ମାପୂଜା ଦେଇ ।
ଦକ୍ଷିଣ ରେଖା ସେ ପୁଣ ସଦାଶିବ ହୋଇ ॥ ୧୦ ॥

କଲି ଅଟେ ଗରୁଡ଼ର ପୂଜା ଅଟେ ସେହୁ ।
ଦୁଇର ମଧ୍ୟର ଏ ନିର୍ବାଣ ପୁର ହୋଇ ॥

ନୟନର ଉପରେ ଯେ ଭ୍ରୂଲତା ମଧ୍ୟରେ ।
ତ୍ରିକୂଟ ସନ୍ଧିରେ ହୀର ବଜ୍ରସ୍ଥ ସେଠାରେ ॥
ଜ୍ୟୋତିରୂପ ସେଠାବରେ ଅଛି ବିନ୍ଦୁ କହୁ ।
ଏହା ଚିହ୍ନି ଘେନଲେ ଅଳକ ଗତି ପାଇ ॥

ଗୁରୁଙ୍କ ଭଣ୍ଡାର ଏହୁ ଗୁପତ ଅଟଇ ।
ଦୃଢ଼ଭକ୍ତ ଶିଷ୍ୟ ହେଲେ ଗୁରୁ ଦିଅନ୍ତି କହୁ ॥
ଶୁଣ ଆହେ ତେର ଦାସ ସପର ମଣ୍ଡଳୀ ।
ପୂର୍ବଜନ୍ମେ ଭାଗ୍ୟ ଥିଲେ ଏହୁ ଗୁରୁ ମିଳି । ୧୫ ।

ଅଣ୍ଡ ବୋଲି ପ୍ରାଣିମାନେ ହେଉଆନ୍ତି ଦାସ ।
ଆତ୍ମାର ଭିତରୁ ଛଳେ ନ ଜାଣନ୍ତି ଲେଶ ॥
ଆତ୍ମା ଭେଦ ଜାଣିଲେଟି ପ୍ରାଣୀ ଗତି ପାଇ ।
ଆତ୍ମା ନ ଭେଟିଲେ ଘୃଣଖାନ ଭ୍ରମୁଥାଇ ॥
ତାହାର ଭିତର ତୁମ୍ଭେ ବୁଝ ମନ ଦେଇ ।
କହିବ ତୁମ୍ଭେ ଶିଷ୍ୟରେ ଏ ଭେଦ ବୁଝାଇ ॥

ଅଂଶା ଅଂଶ ଯେଉଁମାନେ ପୂର୍ବାଭାଗ୍ୟେ ଥିବ ।
ଏ ଗୁରୁ ମିଳିଲେ ତାଙ୍କ ସଂଶୟ ଫିଟିବ ॥
ଅଚ୍ୟୁତର ଶିଷ୍ୟ ରାମ ରାମଶିଷ୍ୟ ବାର ।
ବାର ମଧ୍ୟେ ଗୁରୁ ଅଟେ ଭ୍ରମର କୁମର । ୨୦ ।

ଏହି ବାରଜଣଙ୍କେ ବ୍ରହ୍ମାଣ୍ଡ ଉତ୍ପନ୍ନ ।
ସ୍ଥାନେ ସ୍ଥାନେ ଦେବ ପୁଣି ରହାସ ରଞ୍ଜନ ॥
ଶ୍ରୀକୃଷ୍ଣ ଚୈତନ୍ୟଙ୍କର କରୁଣା ତୁମ୍ଭରେ ।
ଗୋଲୋକ ଆୟୁଧ ଲୀଳା ଧଇଲେ ହସ୍ତରେ ॥

ହରିନାମ ଆଶ୍ରେ କରି ସଂସାରରେ ଥିବ ।
ଅଲକଭେଦ ଜାଣିଲ ସଂସାରୁଁ ଛୁଟିବ ॥
ମୁକୁନ୍ଦ, ଅନନ୍ତ, ବଳୀ, ସୁଦାମ, ଆନନ୍ଦ ।
ଗୋବିନ୍ଦ, ବାଳକ, ମଧୁ, ମଧୂଶ୍ରୀ ଯେ ବୃନ୍ଦ ॥

ଚଉରେ ସନ୍ତୋଷ ହୋଇ ସାଷ୍ଟାଙ୍ଗେ ପ୍ରଣାମ ।
ଆମ୍ଭେମାନେ ହୋଇଅଛୁଁ ଅତ ସେ ଅଧମ । ୨୫ ।

ପ୍ରେମଭରେ ଅଶ୍ରୁପୂର୍ଣ୍ଣରେ କଲେ ଆଲିଙ୍ଗନ ।
ତୁମ୍ଭ ଅମ୍ଭ ଅଙ୍ଗ ପୁଣ ନୋହେ ଭିନ୍ନାଭିନ୍ନ ॥
ଠାକୁର ଆଜ୍ଞାରେ ଅମ୍ଭେ ଆପନେ ବସିବୁ ।
ତୁମ୍ଭଙ୍କୁ ସଂସାର ଦେଇ ଖେଳରେ ରସିବୁ ॥
ଦ୍ୱାପରଲୀଳା ଯେ କିଛୁ ଭିଆଣ କରିବ ।
ଆପଣେ ତରଣ ପୁଣି ପରେ ଯେ ତାରିବ ॥
ଷୋଳସହସ୍ର ଗୋପାଳ ଯେ ଅମ୍ଭର ସେ ଗଣ ।
ମଙ୍ଗୁଳ ଅନନ୍ତ ଶ୍ରେଷ୍ଠ ଅଟନ୍ତି ଯେ ପୁଣ ॥
ବୟସ୍ୟାର୍ଦ୍ଧଗଡ଼ ଗୁଡ଼ି ରାହାସେ ମଜ୍ଜିଲ ।
ବାଳକ ଯେ ପୂର୍ବବଧୂ ମନକୁ ରଞ୍ଜିଲ ॥ ୩୦ ॥
ସାଧୁ ସନ୍ଥ ବୈଷ୍ଣବମାନଙ୍କ ଉତ୍ତମ ।
ରାହାସଲୀଳା ହୋଇବ ଗ୍ରାମ ମଠମାନ ॥
ଆବର ଛଡ଼ ଗୋପାଳେ ତୁମ୍ଭ ସଙ୍ଗେ ପଡ଼ି ।
ରାହାସଲୀଳା କରିବେ ତୁମ୍ଭ ଶିକ୍ଷା କରି ॥
ରାହାସ ଦାସର ଗୁରୁ ତୁମ୍ଭେ ଦାରକଣି ।
ତାହାଙ୍କୁ କହିବ ଏହି ଢଲକ ପ୍ରମାଣ ॥
ଏହି ଗୁରୁଭକ୍ତି ଗୀତା ଦ୍ୱିତୀୟ ଖଣ୍ଡରେ ।
କର୍ମବନ୍ଧ କହିଲି ଯେ ତୁମ୍ଭର ହିତରେ ॥
ବୟସ୍ୟା ସଂସାରେ ଜନ୍ମହୋଇ ତୁମ୍ଭେ ପୁଣ ।
ପୂର୍ବହେତୁ ପ ଯୋଡ଼ିଲ ଦେହକୁ ବହୁଣ । ୩୫ ।
ଆମ୍ଭହେତୁ ପ୍ରପଞ୍ଚିଲ ଶ୍ରୀକୃଷ୍ଣ କରୁଣା ।
ତୁମ୍ଭହେତୁ ପ୍ରସରିଲ ପୂର୍ବର ବାସନା ॥

ଜନ୍ମେ ଜନ୍ମେ ତୁମ୍ଭେମାନେ ସହବାସର ଜନ ।
ଅଚ୍ୟୁତ ବଚନ ତୁମ୍ଭେ ହେତୁ କର ଯେନ । ୩୭ ।

ଇତି ଶ୍ରୀଗୁରୁଭକ୍ତି ଗୀତାୟାଂ ଗୁରୁଶିଷ୍ୟବୋଧନେ
ସ୍ନାନବିଧିକଥନେ ନାମ ଦ୍ୱିତୀୟପଟଳ ।

---

# ତୃତୀୟ ପଟଳ

କର ଯୋଡ଼ି ପଚ୍ଚରନ୍ତି ବସୁ ଯେ ପବନ ।
ଗୋବିନ୍ଦ ଆନନ୍ଦ ହୋଇ ପଚ୍ଚରଇ ପୁଣ ॥
ତ୍ରିସନ୍ଧ୍ୟା କେମନ୍ତ ଗୁରୁ କହିବା ବୁଝାଇ ।
କପାଁ କରୁଥାନ୍ତି ପ୍ରାଣୀମାନେ ଏହା ଧ୍ୟାଇ ॥
ନ କଲେଣ କିସ ହୋଏ କଲେ କିସ ଫଳ ।
ଏଥିର ସନ୍ଦେଶ ଶୁଣ ଦ୍ୱାଦଶ ଗୋପାଳ ॥
ତ୍ରିସନ୍ଧ୍ୟାରେ ସୁମରଣ କରନ୍ତି ଯେ ଜନ ।
ସପ୍ତପୁରୁଷ ଉଦ୍ଧାରନ୍ତି କୃଷ୍ଣ ଭଜ ପୁଣ ॥
ଶୁଣ ଆହେ ଗୋପସୁତ ପ୍ରାତ ସ୍ନାନକଥା ।
ଶୁଣସି ହେ ଏ ତନ୍ତ୍ରର ଯେମନ୍ତ ବ୍ୟବସ୍ଥା । ୫ ।
ମଧ୍ୟ ସନ୍ଧ୍ୟା କହିଦେବ ଏବେ ତୁମ୍ଭେ ଶୁଣ ।
ଯେମନ୍ତେ ଉଦ୍ଧର ହେବୁ ତୁମ୍ଭର ବୃନ୍ଦେଣ ॥
ପ୍ରାତକାଳେ ପୂର୍ବକୁ ଯେ ପ୍ରହରେ ଭଜନ ।
କହୁଁ ଯେ ଛଠି କରିବ ସେକ୍ଷେଇ ବିଧାନ ॥
ଛଅଘଡ଼ି ଗେପେଇ ଯେ କରଣ ସାଧେବ ।
ଦ୍ୱିତୀୟ ପ୍ରହରେ ସ୍ନାନ ପୁଣି ଯେ କରିବ ॥
ପୁଣ ପୂର୍ବମୁଖ ହୋଇ ମନ୍ତ୍ରକୁ ସୁମର ।
ଦ୍ୱିତୀୟ ସନ୍ଧ୍ୟା ସାରିଲେ ସେ ଦଗେ ନ କର ॥
ଦୁଇଘଡ଼ି ସ୍ନେଜନର ଜତ ଯେ କରିବ ।
ଛଅଘଡ଼ି ଶୟନରବିଧି ଯେ ସାଧିବ । ୧୦ ।
ପୁଣ ଦୁଇ ଘଡ଼ିଠାରୁ କର୍ମବିଧି ସାରି ।
ସ୍ନାହାନ କରିବ ଯେ ପଶ୍ଚିମମୁଖ କରି ॥
ଧ୍ୟାନକର ପୂଜାବିଧି ସେ ଦଗେ କରିବ ।
ସୂର୍ଯ୍ୟମୁଖ ହୋଇଣ ଯେ ସ୍ନାହ ନ ସାରିବ ॥

ନିତ୍ୟବାର ସ୍ନାହାନ ଯେ ଗୋପାଳର ବିଧି ।
ଅମେଧ ଗୃହରେ ନ କରିବ ଅନ୍ନସିଦ୍ଧି ॥
ନୂଆପାକ କରି ହସ୍ତେ କରିବ ଭୋଜନ ।
ଖୋଳ କରତାଳ ବନ୍ଧିଥିବ ଯେତେ ଜନ ॥

ଶ୍ରୀ ବୃନ୍ଦାବନଲୀଳା ଶ୍ରୀକୃଷ୍ଣଙ୍କର ବେଶ ।
ଗୁଞ୍ଜ ଗୁଞ୍ଜ ତରସ ତ ଚୂଳ ମାଳ ବେଶ । ୧୫ ।

ଖୋଳ କରତାଳ ଶିଂଘା ବେଣୁ ଯେ ବଇଁଶୀ ।
ଏମାନ ବନ୍ଧଣ ଥିବ ସଦା ଜନ ବସି ।
ଏଣୁକରି ଅଶୁଚି ଯେ ଅଙ୍ଗ ନ କରିବ ।

ଶୁଚିବନ୍ତ ହୋଇକରି ସଦାବେଳେ ଥିବ ॥
ପୂର୍ବଲର ବଣ୍ଡ ପ୍ରାଏ ତାର ଘଟ ରହୁ ।
ଶୁଚିବନ୍ତ ଘଟ ପୁଣ ନୂଆପରି ଥାଇ ॥

ଶୁଦ୍ଧ ଅନ୍ନ ନ ଭକ୍ଷ ଛୁଟକ ଅନ୍ନମାନ ।
ଉପାସନା ନଇବେଦ୍ୟ ନ କରିବ ଭିନ୍ନ ॥

ଶ୍ରାଦ୍ଧଅନ୍ନ ନ ଭକ୍ଷି ପତିତ ଘରଅନ୍ନ ।
କୃଷ୍ଣଉପାସନା ନାହିଁ ପତିତ ଯେ ଜନ । ୨୦ ।

ରାଜଖଣ୍ଡା ଅନ୍ନମାନ ନ କର ଭୋଜନ ॥
ଶମ୍ଭୁ ଅନ୍ନ ବୈଷ୍ଣବ ଜନେ ନଷେଧନ୍ତି ଜାଣ ।
ରାଜା ସମର୍ପଣକୁ କଲ୍ୟାଣ ହୋଇଥାଇ ।
ବୈଷ୍ଣବଙ୍କୁ ଯେ ସମର୍ପଣ କରିବା ନୋହିଇ ॥

ଆମିଷ ମାଂସ ଯେଉଁ ଘରେ ରନ୍ଧାହୋଇ ।
ବ୍ରଜବାସୀ ବଇଷ୍ଣବ ସେ ପାକ ନ ଛୁଇଁ ॥
ପତିତଙ୍କି ଜାଣ ବାବୁ ଯେତେ ପାକମାନ ।
କୃଷ୍ଣରସ ନ ଜାଣେ ଯେ ପତିତରେ ଗଣ ॥

---

୧୫ — । — ଗରଗଡ଼ ଚୂଳ ଯେ ତରସ — ଗ ।

ସୂତକ ଘର ଅମେଧ ଅନ୍ନ ତା ନ ଛୁଇଁ ।
ଦଶମ ଦିବସେ ଗୃହଶୁଦ୍ଧି ତାର ହୋଇ । ୨୫ ।

ଶ୍ରାଦ୍ଧଅନ୍ନ ପିତୃଗଣେ କଲ୍ପିଥାନ୍ତି ପୁଣ ।
ଗନ୍ଧ'ସଲିଳା କରିବ ଏବିଧି ଦେଖିଣ ॥
କୃଷ୍ଣଯୋଗ୍ୟ ନୋହିଛି ସେହୁ ଅନ୍ନମାନ ।
ବ୍ରଜ ବଇଷ୍ଣବମାନେ ତେଜିବଟି ପୁଣ ॥
ସଂସାରର ଜନମାନେ ବାଦୀ ସେ ଅଟନ୍ତି ।
ଘୃଣିବ ସାଧୁମାନେ ସେହୁ ଠାବରୁଟି ॥

ଦ୍ୱାଦଶ ଗଣ୍ଡ ଅନ୍ତରେ ସେଠାରେ ଭୁଞ୍ଜିବ ।
ନବତନ ଶୁଦ୍ଧ ପାକ ହାଣ୍ଡି ସେ କରିବ ॥
ବାଦୀମାନେ ସଂସାରେ ବନ୍ଧିତ ଛନ୍ତି ଜାଣ ।
ଅକର୍ମ ଜନମାନେଟି କର୍ମର ବିଧାନ । ୩୦ ।

କୃଷ୍ଣଙ୍କ ନିଷେଧ ଯେ ବୈଷ୍ଣବ ସର୍ବ ଜନ ।
ଏଗାର ଦିବସ ଯାଏ ନ କରେ ଭୋଜନ ॥
ଅକର୍ମର ଗନ୍ଧ ଜିହ୍ୱା ଲାଳସା କରିଛି ।
କର୍ମମାନ ଜାଣିକରି ମୁକାର ବହିଛି ।
ବ୍ରଜନାଥ କର୍ମମାନ ତୁମ୍ଭେ କରୁଥିବ ।
ଗୋପାଳମୂରତି-କଳା ହୃଦରେ ଧରିବ ॥
ନେ୍ୟାତଗନନ୍ଦ ମୂରତି ଶ୍ରୀକୂଟେ ବସାଇ ।
ନିତ ଭୋଗ ଦେଉଥିବ ସେ ସ୍ଥାନକୁ ଯାଇଁ ॥
ଗୋପାଳ ମନ୍ତ୍ରକୁ ପାଞ୍ଚଭାଗ ସେ କରିବ ।
ପଞ୍ଚ ଯେ ମୂରତି ଏହି ଭାବରେ ପୂଜିବ । ୩୫ ।

ଜନ ବଳଭଦ୍ର ହରି ଶ୍ରୀପୁର ସୁନ୍ଦରୀ ।
ଗୋପୀ ଗୋବିନ୍ଦାସ୍ତୁ ବଲ୍ଲଭାସ୍ତୁ ପୂଜା କରି ॥
କୃଷ୍ଣାସ୍ତୁ କୃଷ୍ଣ ପଜିବ ଏପଞ୍ଚ ବିଧିରେ ।
ଶ୍ରୀପୁର ପୂଜିଲେ ଗୋପୀ ଥାନ୍ତି ତାଙ୍କଠାରେ ॥

ଯଥା କୃଷ୍ଣଙ୍କ ମୂରତ ସଦ୍ଧକେ ବିଖ୍ୟାତ ।
ଏକ ଅଙ୍ଗ ପଞ୍ଚମୂର୍ତ୍ତି ଲୀଳାର ନିମିତ୍ତ ॥
ଶୁଣ ଆହେ ଗୋପସୁତ ଅଚ୍ୟୁତ ବଚନ ।
ଏହୁ ଗୁରୁଭକ୍ତି ଗୀତା ଦ୍ୱିତୀୟ ଖଣ୍ଡେଣ ॥
ପୂର୍ବ ଜନ୍ମ ଭାଗ୍ୟଥିଲେ ବିଷ୍ଣୁ ବ୍ରତ କରନ୍ତେ ।
ବିଷ୍ଣୁଙ୍କୁ ସୁମରଣେ ଭବ-ଭୟ ହରେ । ୪୦ ।

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟବୋଧନେ
ପୂଜା ବିଧି ବିଧାନକଥନେ ନାମ ତୃତୀୟପଟଳ ।

— ※ —

# ଚତୁର୍ଥ ପଟଳ

ବନ ବିଷ୍ଣୁ ଦେଖିଣ ଯେ ପଚରନ୍ତି ପୁଣ ।
ତଳକର ଥୋକେ ପ୍ରଭୁ ନୋହିଲ ପ୍ରମାଣ ॥
ଏ ଦୁଇ କର୍ମ ଛାଡ଼ିଣ ଅନ୍ୟ କର୍ମ କରେ ।
କନିଷ୍ଠ ଗୋପାଳ ବୋଲି କହନ୍ତି ତାହାରେ ॥
ଉତ୍ତମ ମଧ୍ୟମ ଯେ କନିଷ୍ଠ ତିନି ମତ ।
ଜାତିମାନଙ୍କରେ ପ୍ରାଣୀ ଅଛନ୍ତି ଏମନ୍ତ ॥
ଏଣୁକରି ତୁମ୍ଭେମାନେ କୁଳ ସେ ତାରିବ ।
କଳିଯୁଗରେ ତୁମ୍ଭର କୀରତି ରହିବ ॥
ମଧ୍ୟମ କନିଷ୍ଠ କୁଳେ ରାମ ଭୃଥ ସାର ।
ବିଷ୍ଣୁ ଧର୍ମ ବନ ପଞ୍ଚଜନେ ମୋର ସାର । ୯ ।
କମାର ଯେ ରାମଦାସ କୁମ୍ଭାର ଯେ ରାମ ।
ନନ୍ଦ କନ୍ଦ ମୁରାରି ଅଟନ୍ତି ତିନିଜଣ ॥
ନିରଞ୍ଜନ ବେହେରା ଦକ୍ଷିଣ ଚନ୍ଦ୍ର ଦୁଇ ।
କନିଷ୍ଠ ମଧ୍ୟମ ଚାରି ବାରଜଣ ସ୍ଥଇ ॥
ବିଶ୍ୱ ବନ୍ଦାପନା ଯେ ଅଶୌଚ କର୍ମମାନ ॥
ଧର୍ମ ପଥମାନ କରି କରନ୍ତି ସ୍ଥାପନ ।
ସତ ଯତ ଦୟା ଶାନ୍ତି ମନ୍ତ୍ର ଯନ୍ତ୍ରମାନ ।
ଗୁମ୍ଫା ଯେ ଅବାଡ଼ ଜ୍ୟୋତି ସମାଧି ସାଧନ ॥
ଏ ସାଧନମାନ ତୁମ୍ଭେ ନିତ୍ୟ କରୁଥିବ ।
ଆପଣେ ତରିବ ତୁମ୍ଭେ ପରେ ନିସ୍ତାରିବ । ୧୦ ।

ଏ ଭେଦ ଜାଣି ଉତ୍ତମ ମଧ୍ୟମ ଯେ କରେ ।
ଖଣ୍ଡଣ କଲେଣି ପାପ ଲାଗିବ ତୁମ୍ଭରେ ॥

---

୧୦—୧ :—ଅଙ୍ଗେ କରୁଥିବ—ଗ

ରୋଗ ଶୋକ ଦାରିଦ୍ର୍ୟ ଗୃହରେ ହେବ ଜାତ ।
ଏଣୁକରି ଶାନ୍ତ ରୂପ ଧର ଗୋପସୁତ ॥
ଖୋଲ ଯେ କର୍ତ୍ତାଳ ଶିଙ୍ଗା ବେଣୁ ଯେ ବଇଂଶୀ ।
ଗୁଞ୍ଜି ଗୁଞ୍ଜ ଗରଡ଼ ଚୂଳ ଫାସ ମିଶି ॥
ଶଙ୍ଖ ବୀଣା ଖଞ୍ଜଣି ପଖାଉଜ ମୟୂର ।
ଏମାନ ବହନ୍ତୁ ତୁମ୍ଭେ ଶ୍ରେଷ୍ଠ ଗୋପ ତେର ॥
ମକୁନ୍ଦ ଅନନ୍ତ ବସ୍ତ୍ର ପବନ ସୁଦାମ ।
ଯାଦବ ବାଳକ ମଧୁ ମଥୁରା ଉତ୍ଥାନ । ୧୬ ।

ଗୋବିନ୍ଦ ଯେ ବୃନ୍ଦାବନ ବାରପୁତ୍ର ଶୁଣ ।
ଉତ୍ତମ ଗୋପାଳ ତୁମ୍ଭେ ମୂଳେ ଥିବ ପୁଣ ॥
ଫୁଲ ପାନ ବସନ ଚନ୍ଦନ ଦୃଢ଼ ମନ ।
ଏମନ୍ତ ପୂଜା ଦେଖିବ ଯେତେକ ଭୁବନ ॥
ଏହା ଦେଖିଲେ ଯେ ପୁଣ ପ୍ରହାସ ରହିବ ।
ଅଣବ୍ରସ ଜନଠାରେ କେବେଁ ନ ବସିବ ॥
ଭୁଞ୍ଜିବ ଯେ ନୂଆପାକେ ହସ୍ତରେ ରାନ୍ଧଣ ।
ଦ୍ୱାଦଶ ଗୋପାଳେ ଭୋଗ ଦେବ ବାର ସ୍ଥାନ ॥
ଶଙ୍କର ଶବନ୍ଧ ଦେବ ମଧୁଦାସ ମୂଳେ ।
ବାଳକ ରନ୍ଧନ ପାକ କିଶଣି କୁଶଳେ ॥
ସଖୀ ଅଙ୍ଗ ସେବା ରଖ ମୁକୁନ୍ଦ ଅନନ୍ତ ।
ରାଧା ସେବା ମୁକୁନ୍ଦ ଦୂତୀସେବା ଅନନ୍ତ ॥
କୃଷ୍ଣସେବା ପବନ କରିବେ ମନ ଦେଇ ।
ଉତ୍ଥାନ ମୃଦଙ୍ଗ ସେ ଉଚ୍ଛୁଳିବ ମହୀ ॥

ଦୁଆର ମୃଦଙ୍ଗ ଧର ଗୋବିନ୍ଦ ହୋ ଦାସ ।
କଂସାଳ ଶିଙ୍ଗା ଧରିବ ଆନନ୍ଦ ହରଷ ॥
ଦ୍ୱିତୀୟ କଂସାଳ ରଖ ବସ୍ତ୍ର ଦାସ ମୂଳେ ।
ତୃତୀୟ କଂସାଳ ରଖ ମାଧୁସ୍ଥର ମେଳେ ॥

ବୃନ୍ଦାବନ ଦାସ ମୂଳେ ପଞ୍ଚା ସେ ବଖାଣି ।
ଏହୁ ବାର ଦାସଙ୍କର ସନ୍ନ୍ୟାସ ଗାଥୁଣି । ୨୫ ।

ଶ୍ରେଷ୍ଠ ସେ ଗୋପାଳ ଅଟ୍ଟ ତୁମ୍ଭେ ବାର ଦାସ ।
ତୁମ୍ଭ କରୁଣାରୁ ସର୍ବଶ୍ରେଷ୍ଠ ହେବ ଅଂଶ ॥
ଚବଶ ଗୋପାଳ ଶୁଣ ତିଳକ ପ୍ରମାଣ ।
ବନ ହସ୍ତ୍ ଦକ୍ଷିଣ ପଶ୍ବରେ ଯାହା ପୁଣ ।

ଚବଶ ଗୋପାଳ ଯେନ ଏହୁ ସେ ଈଶ୍ବର ।
ଉତ୍ତମ ମଧ୍ୟମ ଶିଷ୍ୟ ଗୁରୁ ସମାଚ୍ବର ॥
ହୁଣ ମନ୍ଦର ତିଳକ ସପ୍ରବନ୍ଧ୍ କଥ
କହିବା ଏଥିର ସନ୍ଧ ସେ ଏଥି ବ୍ୟବସ୍ଥା ॥

ହୃଦସ୍ଥ ତିଳକବନ୍ଧ୍ କହୁଅଛୁ ଶୁଣ ।
ଦ୍ୱାଦଶ ତିଳକ ଯେହେଁ ସ୍ୱବେଶ ପ୍ରମାଣ । ୩୦ ।

କଣ୍ଠେ ସୂର୍ଯ୍ୟ ଦେବତାଙ୍କୁ ତିଳକ ସେ ଦେଇ ।
ନୟନକୋଣ ତିଳକ ଚନ୍ଦ୍ର ଦେବ କହି ॥
କଣ୍ଠତଟ ତିଳକ ଯେ ଈଶ୍ବର ଗହଗ୍ରି ।
କମଳା ସଖୀ ବାହୁରେ ପୂଜାବଧି କର ॥
ଲକ୍ଷ୍ମୀନାରାୟଣ ପୂଜ ହୃଦଦେଶେ ଦେଇ ।
ବ୍ରହ୍ମା ସ ବଣୀଙ୍କ ପୂଜା ନାଭିରେ ବସଇ ॥
କାମଦେବ କାମାକ୍ଷୀଙ୍କି ଲିଙ୍ଗମୂଳେ ଦେବ ।
ଶଙ୍କିନୀ ଗଣପତିଙ୍କ ପଦାଦ୍ୟେ ପୂଜିବ ॥
ଦ୍ୱାଦଶ ତିଳକଭେଦ ଶୁଣ ମନ ଦେଇ ।
ପଞ୍ଚାଶ ଅକ୍ଷରେ ଯେ ନିର୍ବାଣ ପୂଜା ହୋଇ । ୩୫ ।

ଏ ପଞ୍ଚାଶ ଚିହ୍ନିକର ତିଳକ ସେ ଯେତନ ।
ମୃତ୍ୟୁକାଳେ ଗମନ୍ତ ଏ ଶ୍ରୀକୃଷ୍ଣ ଭୁବନେ ॥

---

୨୯—୨ :—ଶୁଣିଲେ ଏଥିର ସନ୍ଧ ନ ଥିବ ସେ ବାଧା—ଗ

ଏ ପଞ୍ଚାଶ ନ ଭେଦ ଯେ ଯେବେଇଁ ଝଳକ ।
ମଲେଣ ସେ ଆତଯାତ ହେଉଥାନ୍ତି ଲୋକ ॥
ସାଧୁତ ମହତଘରେ ଜନ୍ମ ହେଉଥାନ୍ତି ।
ମୁକ୍ତିପଦ ଲଭନ୍ତି ଯେ ଭକ୍ତ ନ ପବନ୍ତି ॥
ପଞ୍ଚାଶ ଅକ୍ଷର ଭେଦ ଝଳକ ଯେ ଦେବ ।
ବେନି ଚକ୍ଷୁକୋଣେ ସିଧି ଅକ୍ଷର ବସିବ ॥
ର ଅମୃ ବସିବ ଓଷ୍ଠର ଯେ ବେନି କୋଣେ ।
ଇ ଈ ବସିବ ଦନ୍ତପାଟିର ବେନି ସ୍ଥାନେ । ୪୦ ।

ଓଔ ଲଲାଟରେ ବସେ ଭୃଙ୍ଗ ଭୁଜ ଦୁଇ ।
ୠ ୠ ବସେ ଶ୍ରବଣରେ ଏଐ କଣ୍ଠୁଚନ୍ଦ୍ରି ॥
ଉ ଊ କୁକ୍ଷିରେ ବସେ ବ୍ରହ୍ମରନ୍ଧ୍ରେ ଅ ଆ ।
ଗୁରୁଙ୍କ ବଚନ ଏହୁ ଦୃଢ଼ଚିତ୍ତ ହୁଅ ॥

ଡାହାଣ ଭୁଜରେ କ ଖ ଗ ଘ ଙ ବସଇ ।
ବାମଭୁଜେ ଚ ଛ ଜ ଝ ଞ ଛର ଯେ ଶୋହି ॥
ଟ ଠ ଡ ଢ ଦକ୍ଷିଣ ଯେ ପାଦମଳେ ବସେ ।
ଣ ତ ଥ ଦ ଧ ନ ବାମପାଦ ଅଙ୍ଗେ ମିଶେ ॥
ପ ଫ ବ ଭ ମ ଯ ନାଭିଦେଶରେ ପ୍ରକାଶ ।
ର ଲ ଶ ଷ ସ ରେଖ ଲୀନ ହୋଏ ଶେଷ । ୪୫ ।

ହଂ କ୍ଷଂ ବ୍ରହ୍ମରନ୍ଧ୍ରେ ଏମନ୍ତେ ପ୍ରକାଶ ।
ଝଳକଭେଦ ଜାଣନ୍ତି ପ୍ରେମନ୍ତ ଯେ ଦାସ ॥
ଏ ଭେଦ ନ ଜାଣି ଯେବେ ଯେବନ୍ତି ଝଳକ ।
ମନର ସଂଶୟମାନ ନ ଛୁଟଇ ତାଙ୍କ ॥
ଛଅ ଛନ୍ନ ଛନ୍ନ ଯେ ଶାସ୍ତ୍ରମାନ ଶୁଣି ।
କେଉଁଠାରୁ ପରୁଟିବେ ହେଉଥାଇ ଗୁଣି ॥

---

୪୨—୧ ଉ ଊ—ଦକ୍ଷିଣରେ—ଗ ।

ଏଣୁକର ସଦଗୁରୁଙ୍କଠାରୁ ଘେନ ନାମ ।
ନାମକୁ ଚିହ୍ନିଲେ ଦମ୍ଭ ମନର ହରମ ॥

ନାମ ବୀଜମନ୍ତ୍ର ଅଣଅକ୍ଷର ଯେ ହୋଇ ।
ଦ୍ୱିତୀୟ ଡାଳ ଯେ ଏକାକ୍ଷର ମନ୍ତ୍ର କହି । ୧୦ ।

ତୃତୀୟ ଡାଳ ଯେ ପୁଣ ଅଟଇ ତାରକ ।
ଶ୍ୟାମ ପଞ୍ଚାକ୍ଷର ମନ୍ତ୍ର ଚତୁର୍ଥ ତ ଲେଖ ॥

ଷୋଳନାମ ଗୋଟି ପଞ୍ଚ ଡାଳ ଯେ ଅଟଇ ।
ଏ ପଞ୍ଚମନ୍ତ୍ରରୁ ସର୍ବମନ୍ତ୍ର ଜନ୍ମ ହୋଇ ॥

ଏହୁ ପଞ୍ଚମନ୍ତ୍ର ଭଜ ଶୁଚିବନ୍ତେ ଥିବ ।
ଶ୍ୱାସ ଧାରଣ ପ୍ରାଣେ ସମାଧି ସାଧିବ ॥

ସଂସାର ପାପ ତୁମ୍ଭର ଅଙ୍ଗରେ ନ ମିଶେ ।
ହୃଦିରେ ନାମଟି ଯେବେହୁଁ ସ୍ଫୁର୍ତ୍ତି ପରକାଶେ ॥

ହରଷ ହୋଇଲେ ଶୁଣି ଚବଣ ଗୋପାଳ ।
ଅଚ୍ୟୁତର ଚରଣରେ ନମିଲେ ସକଳ ॥

ଏହୁ ଗୁରୁଭକ୍ତ ଗୀତା ଯେ ଜନ ପଢ଼ଇ ।
ସକଳ ପାପମୁକ୍ତ ହୋଇ ମୁକତ ॥ ୧୫

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ
ବୋଧନେ ଢଳକବଧନଷ୍ଟସ୍ୱେ ନାମ
ଚତୁର୍ଥ ପଟଳ ।

---

# ପଞ୍ଚମ ପଟଳ

ବାଳକ ମଥୁର ବୃନ୍ଦାବନ ଯେ ପର୍ଯ୍ୟନ୍ତ ।
ମାଳାମାନ କ ଜମନ୍ତେ ହୃଦେ ଆନ୍ତ ଧର ॥

ଏଥର ଯେ ସାର ଗୁରୁ କହ୍ନଦେବ ପୁଣ ।
କେମନ୍ତ କର ଭଜନ କେଉଁ ମନ୍ତ୍ରେ ପୁଣ ॥

ଶୁଣ ଅହୋ ଗୋପସୁତ କହ୍ନଦେବା କହୁ ।
ଅପାର ମହିମା ଯେ ତୁଳସୀମାଳେ ଅଛୁ ॥

ଶତେ ଅଷ୍ଟଗୋଟି ଯେ ତୁଳସୀ ମାଳକର ।
ମେରୁ ବୋଲି ଏକଗୋଟି ସବ ପରେ ଭର ॥

ବ୍ରହ୍ମଅଙ୍ଗ ଧରଣ ଯେ ଅଛନ୍ତ ତୁଳସୀ ।
ସାଧୁଜନମାନେ ଭଜନକୁ କର ଆଶା ॥ ୫ ॥

ଛନ ଗଣ୍ଠାଠାରେ ନେତ୍ର ଅଟଇ ପ୍ରମାଣ ।
ଦ୍ୱାଦଶ ଗଣ୍ଠାଠାରେ ଯେ ଭୁଜ ପରମାଣ ॥

କୋଡ଼ିଏ ଗଣ୍ଠାରେ ତାଙ୍କ ଚରଣ ଅଟଇ ।
ପଚଶ ଗଣ୍ଠାରେ ପୁଣ ଆଉ ପାଦ ହୋଇ ॥

ଆଠଗୋଟି ଶଏପରେ ଆରପାଦ ଜାଣ ।
ମେରୁ ଯେତୁ ଶିର ତାଙ୍କ ଅଟଇ ପ୍ରମାଣ ॥

ଏମନ୍ତ ହୋଇଣ ଯେ ଅନନ୍ତ ବ୍ରହ୍ମରୂପ ।
ଭଗନ୍ତଜନେ ମନ୍ତ୍ରମାନଙ୍କୁ ଯେ ଜପ ।
ଅନାମିକା ଅଙ୍ଗୁଳି ଯେ ମଧ୍ୟରେ ଧରବ ।
ଇଷ୍ଟମନ୍ତ ଯେ ଯାହାର ତହିଁରେ ଜପିବ । ୧୦ ।

ଯେତେବାର ଫେରାଇଲେ ଗନ୍ଥେ ପୁଣ ହୋଇ ।
ଷୋଳଗନ୍ଥ ଫେରାଇଲେ ଲକ୍ଷେ ଯେ ବୋଲଇ ॥

ପନ୍ଦର-ଗଣ୍ଡା ଯେ ଦୁଇ ଗୋଟିର ଭଜନ ।
ଶିଷ୍ୟର ଯେ ପାପମାନ ହୁଅଇ ଦହନ ॥
ଅଦ୍ୟରେ ଯେ ଦୁଇଗୋଟି ଗୁରୁଙ୍କ ଦକ୍ଷିଣା ।
ଏଣୁକରି ଶିଷ୍ୟ ମନ୍ତ୍ର କରୁଥିବ ଗଣା ॥
କେ ଅବା ଗ୍ରନ୍ଥେ ଜପିବ କେବା ଦୁଇଗ୍ରନ୍ଥ ।
କେ ଅବା ରୁଏ ଜପିବ ବୟସ୍ୟାଜଡ଼ିତ ॥

କେ ଅବା ତୃତୀୟ ଗ୍ରନ୍ଥ କେବା ସ୍ୱର ପାରେ ।
ବୟସ୍ୟା ତେଜିଲେ ଅବା ଲକ୍ଷେ ନାମ ଧରେ । ୧୯ ।

ତଜନୀ ଅଙ୍ଗୁଷ୍ଠ ଅଗ୍ରେ ମନ୍ତ୍ର ନ ଜପିବ ।
ଯେତେକ ଜପ କରିବ ନିଷ୍ଫଳ ହୋଇବ ॥
ଅସଂଖ୍ୟ କରଣ ଯେବେ ମନ୍ତ୍ର ଜପ କରି ।
ମଲେଂ ଲଭନ୍ତି ସେ ଯେ ବଇକୁଣ୍ଠ ପୁରୀ ॥
ରଜାଘରେ ସାଧୁତ ମହନ୍ତ ଘରେ ଜାତ ।
ଭଜନ ସିଦ୍ଧି ନୋହୁଣୁ ଯେବେ ହୋଏ ହତ ॥

ଚୁଆ ଗ୍ରନ୍ଥ ଲକ୍ଷେ ଜାଣି ଯେ ନର ଜପଇ ।
ଗୋଲୋକେ ପ୍ରବେଶ ହୋଇ ବୈଷ୍ଣବେ ଜନ୍ମଇ ॥
ଗୋଲୋକେ ବୈଷ୍ଣବଘରେ ଆତଯାତ ହୋଇ ।

ସଜୁତ ସାଧୁତ ଘରେ ଜନ୍ମ ତାର ନାହିଁ ॥ ୨୦ ॥
ମହାନ୍ତ ଦଣ୍ଡପାଟରେ ନୋହନ୍ତି ସେ ଜାତ ।
ମହାନ୍ତ ଦଣ୍ଡପାଟରେ ମୁରାଠ ବହୁତ ॥
ସଜୁତ ସଧୁତ ଯେ ମହାନ୍ତ ପୁଣ ହୋଇ ।
ମମତା ଛାଡ଼ିଲେ ସେହୁ ଭଗତ ଲଭଇ ॥

ଏଣୁକରି ତୁମ୍ଭେମାନେ ନିଜ କର୍ମ ଛାଡ଼ ।
ସନ୍ନ୍ୟାସ ରହିଲେ ତୁମ୍ଭେ ହୋଇବ ଯେ ବଡ଼ ॥
ଯୋଗ୍ୟପୁଣ ହେଲେ ମନ୍ତ୍ର ଭଜନ କରଇ ।
ଗୁରୁଙ୍କ ଦକ୍ଷିଣା ଜପେ ଗୁରୁ ଗତ ପାଇ ॥

ଦ୍ୱିଗୁଣ ସେ ମାଳାରୋପିତି ଶିଷ୍ୟର ଦେହରେ ।
ଗୁରୁଙ୍କ ଜନ୍ମେ ଶିଷ୍ୟ ବହଇ ହୃଦରେ । ୨୫।
ପଞ୍ଚାଶ ଶିଷ୍ୟରେ ଶଏ ଗୁରୁଙ୍କର ମାଳ ।
ଅଠର ଜନ୍ମେ ଭୁଞ୍ଜେ ତି ଡଣ୍ଡ ମିଳ ॥
ଏଣୁକର ଶିଷ୍ୟଠାରେ ଗୁରୁଙ୍କ ଭଜନ ।
ଯୋଗ୍ୟ ଶିଷ୍ୟ ହେଲେ ଗୁରୁ ତାରନ୍ତି ସେ ପୁଣ ॥
ଶିଷ୍ୟ ସ୍ନାହାନ ସାରଲେ ଗୁରୁ ସ୍ନାନ କରି ।
ଏଣୁକରି ଗୁରୁଅଙ୍ଗ ପାପକୃତ ହରି ॥
ଜ୍ଞାନବଳେ ଗୁରୁ ପୁଣ ଶିଷ୍ୟପାପ ନାଶେ ।
ନୈତଗନନ୍ଦଙ୍କ ଧାମ୍ବୀ ଥାଅନ୍ତି ମାନସେ ॥
ଜୀବ ପରମର ଭେଦ ଗୁରୁ ଯେ ଜାଣଇ ।
ସେ ଗୁରୁ ଆପଣେ ତରି ଶିଷ୍ୟ ତାରି ନେଇ । ୩୦ ।
ଯେଉଁ ଗୁରୁର ଜୀବ ପରମ ଭେଦ ନାହିଁ ।
ଗୁରୁ ଶିଷ୍ୟ ଭ୍ରମୁଥାନ୍ତି ଦେହ ନାନା ବହି ॥
ମୁକୁନ୍ଦ ଅନନ୍ତ ବାଣୀ ଘେନବା ଗୋସାଇଁ ।
ହୃଦରେ କେମନ୍ତେ ମନ୍ତ୍ରମାନ ଜପ ହୋଇ ?
ଜ୍ଞୋପଚନ୍ଦ୍ରେ ମହାନ୍ତ ଚଇ ଶୁଣ ବୈଷ୍ଣବନ ।
ତୁମ୍ଭେ ସେ ପଚ୍ଚରୁପାର ଗୁପ୍ତ କଥାମାନ ॥
ପୂର୍ବର ବାସନା ଥିଲା ବହୁସ୍ତା ତେଜିଲ ।
ଗୋକୁଳ କୁଳରେ ତୁମ୍ଭେ ବନ୍ଦନ ହୋଇଲ ॥
ଫଳ ବୃକ୍ଷମାନଙ୍କୁ ଖଣ୍ଡେ ଯେବେ ଥାଇ ।
ସକଳ ତାହାର ପୁଣ ବାହାର ହୁଅଇ ।୩୫।
କହିବା ତହିଁର କଥା ଶୁଣ ବୈଷ୍ଣବଜନ ।
ଅଙ୍ଗୁଷ୍ଠି ରେଖାରେ ଜପ ଯେମନ୍ତ ହୋଇଣ ॥
ଛୋଡ଼ଏ ଗୁଆ ସେ ନାମ ଭଜନ କରିବ ।
ତଳଣ ଛୋଡ଼ଏ ନାମ ଯେମନ୍ତ ବୁଝିବ ॥

ବାମହସ୍ତେ କୋଡ଼ିକ ପୂରିବା ଅନୁସାରେ ।
ଗ୍ରନ୍ଥେକ ହୁଅଇ ପୁଣି ଏକ ଯେ ବାଂଶରେ ॥
ଗ୍ରନ୍ଥେକ ନାମ ଯେ ପୁଣି ଶୁଣ ମନ ଦେଇ ।
ଗୁଣଶ ଛଅ ହଜାର ପ୍ରମାଣ ଅଟଇ ॥
ଷୋଳ ଗ୍ରନ୍ଥେ ନାମ ପୁଣି ଲକ୍ଷେକ ପ୍ରମାଣ ।
ଦୁଇ ସହସ୍ର ଗୁଣଶଟି ଅଧିକ ଯେ ଜାଣ ।୪୦ ।

ଏମନ୍ତ ଦୋଇଣ ମନ୍ତ୍ର ଭଜନ ଅଟଇ ।
ଦୁଇ ସହସ୍ର ଗୁଣଶ ଗୁରୁଙ୍କ ମନ୍ତ୍ର ହୋଇ
ଲକ୍ଷେ ନାମ ଜପି ଶିଷ୍ୟ ଅଭେଦ ଅଟଇ ।
ଶିଷ୍ୟ ଏଣୁ କହେ ଯେ ଭେଦାଭେଦ ନାହିଁ ॥

ତତ୍ତ୍ୱ ନ ଜାଣିଲେ ମନ୍ତ୍ର ହୃଦେ ଦୃଢ଼ କର ।
ମୁଖେ ଜପ କରୁଥାଇ ମନ୍ତ୍ରନାମ ଧର ॥
ପବନ ହନୁମାନ ଦୁଇ ପଣ୍ଡୁରୁଁ ଗୋସାଇଁ ।
ତତ୍ତ୍ୱର ଭଜନ ଏବେ କହିବା ବୁଝାଇ ॥
ଶୁଣ ହେ ପବନ ଦାସ ଅତି ଏ ଗୁପତ ।
ସହସ୍ର ଜନରେ ଅବା ଜାଣେ ଏକ ତତ୍ତ୍ୱ ।୪୫

ସତଗୁରୁ ମିଳିଲେ ଯେ ସତଶିଷ୍ୟ ପାଇ ।
ଅପଗୁରୁ ଅବା ଅପଶିଷ୍ୟ ନ ଜାଣଇ ॥
ପରମ ଗୁପତ ଦୀକ୍ଷା ଭଜନର ସାର ।
ହେତୁମନେ ପବନ ହେ ହନୁମାନ ବୀର ॥

ଶୁଣ ଆହେ ଗୋପ୍ୟ ତ ତହିଁ ଅଛୁ ଭେଦ ।
ହୋଇଛୁ ମନ୍ତ୍ର ତହିଁରେ ଗୁରୁଗୋଟି ଛନ୍ଦ ॥
ଗାୟତ୍ରୀ ବଟଣ ମୂଳେ ସାବିତ୍ରୀ ବସଇ ।
ଛୁଦ୍ର ସ୍ତ ଖ ବ୍ରହ୍ମ ସ୍ତ ସ ଗୁଣମନ୍ତ୍ର ହୋଇ ॥

ଗୁଣମନ୍ତ୍ର ଏକ ଏକ ଅକ୍ଷର ମନ୍ତ୍ରସାର ।
ଜଣ୍ଡୋକ ପୂରିଛୁ ମନ୍ତ୍ର ମନରେ ବିଚାର ।୫୦।

ଆବର ଛଦକୁ ମେରୁ ଅଙ୍କରେ ବସାଇ ।
ଏ ତତ୍ତ୍ୱ ଜାଣିଲେ ଶିଷ୍ୟ ଭଗତ ଲଭଇ ॥
ମାଲରେଖ ଜପ କଲେ ନବ ଭକ୍ତି ହୋଇ ।
ଦଶ ଯେ ଭଗତତତ୍ତ୍ୱ ଜପ କଲେ ପାଇ ॥
ମାତାଗର୍ଭେ ରେଖାମାଳ ଜପକରେ ଜୀବ ।
ମୃତ୍ୟୁକାଳେ ରେଖାମାଳ ଜପି ନ ପାରଇ ।
ମମତା ଦେହରେ ରେଖାମାଳ ଜପହୋଏ ।
ତତ୍ତ୍ୱ ନ ଜାଣିଲା ଶିଷ୍ୟ ଜପ କରୁଥାଏ ॥
ଯେଉଁ ଶିଷ୍ୟ ତତ୍ତ୍ୱରେ ଭଜନ ପୁଣ କରେ ।
ମୃତ୍ୟୁକାଳେ ମନେ ଭଜି ଅମନେ ବନ୍ଧରେ । ** ।
ନିତି ଅବସରେ ଜପ କରୁଛୁ ଇଚ୍ଛାରେ ।
ସେ ଜପର ସାଧନରେ ବିଶ୍ରାମରେ ଧରେ ॥
ନିଶି ଦିବସରେ ହଂସ ଜପ କରୁଥାଇ ।
ଏକୋଇଶ ହଜାର ଯେ ଛଅଶ ଅଟଇ ।
ଏମନ୍ତ ଭଜନ ଯେ କରିପାରେ ଜନ ।
ଶ୍ୱେତ ରଙ୍ଗ ଶ୍ୟାମଳ କଳାରେ ଦେଇ ମନ ॥
ତେବେ ଜୀବ ଗତି ପାଏ ଗୁରୁମୁଖୁଁ ଶୁଣି ।
ଗୁରୁ ଶିଷ୍ୟ ତରନ୍ତି ଯେ ତତ୍ତ୍ୱ ଜପ ଗୁଣି ॥
ଜପିଲେ ଭଗତ ଗତି ପାଇବ ଉତ୍ତମ ।
ସଦଗୁରୁ ସେବିଥିଲେ ସଦଶିଷ୍ୟ ମାନ ॥ ୭୯ ॥
ଏହି ଗୁରୁଭକ୍ତିଗୀତା ଦ୍ୱିତୀୟ ଖଣ୍ଡରେ ।
କହଇ ଅଚ୍ୟୁତ ଗୋପସୁତଙ୍କ ଆଗରେ ॥ ୭୧ ॥

**ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ ବୋଧନେ ମାଲାନିର୍ଣ୍ଣୟେ ଭଜନବିଧି କଥନେ ନାମ ପଞ୍ଚମ ପଟଳଃ ।**

—※—

# ଷଷ୍ଠ ପଟଳ

ସନ୍ଦୁଦାସ ପଚ୍ଛାରଇ ଗୁରୁମୁଖ ଚାହିଁ ।
ଯେଉଁ ନର ତୁଳସୀର ମାଳ ଥାନ୍ତି ବହି ॥

ଶୁଣ ସନ୍ଦୁଦାସ ବସ୍ତ୍ର କହୁ ଦେବା ତୋରେ ।
ତୁଳସୀ ବନ୍ଧଣ ଥାନ୍ତି ଯେ ଜନ ହୃଦରେ ॥

ଶିରରେ ତୁଳସୀ ଥିଲେ ବ୍ରହ୍ମହତ୍ୟା ହରେ ।
କର୍ଣ୍ଣରେ ତୁଳସୀ ଥିଲେ ଗୋହତ୍ୟା ଛଡାରେ ॥

କଣ୍ଠରେ ତୁଳସୀ ଥିଲେ ଭଗତ ଲଭଇ ।
ବାହୁରେ ବାନ୍ଧିଥିଲେ ସୁରାପାନ ଖଏ ଯାଇ ॥
ମାତୃ ଯେ ହରଣ ଦୋଷ ହୃଦୟରେ ନାଶେ ।
କରମାଳେ ବସୁନ୍ଧାପାତକ ଯେ ବିନାଶେ ॥ ୯ ॥

ଶଏ ଅଷ୍ଟୋତ୍ତର ଯେ ହୃଦରେ ଲମ୍ବାଇ ।
ଚଉବନ ଗୋଟି କଣ୍ଠତଃରେ ଘେନଇ ॥
ଚଉବନ ଅଙ୍କ କରମାଳାନ୍ତର ଧରିବ ।
କରମାଳା ଅଙ୍କେକ ଯେ କଣ୍ଠରେ ଥୋଇବ ॥

ଗୋଟିଏ ବଳିବ ତହିଁ ମେରୁ ଅଙ୍କେ ହେବ ।
ଛତ୍ର ଗୋଟି ଅଙ୍କେ ହେବ ଲେଖାରୁ ଆସିବ ॥
କର୍ଣ୍ଣ ଅଙ୍କେ ଶିଖପରେ ରଖିବ ଯତନ ।
ଏମନ୍ତେଣ ବଇଷ୍ଣବ ମାଳାର ଭଜନ ॥

ଲୋଗା ନ କରଣ ମଳ ବନ୍ଧଣ ଯେ ଥାନ୍ତି ।
ମୁକତ ପଥରେ ଯାନ୍ତି ଭନ୍ତି ନ ପାବନ୍ତି ॥ ୧୦ ॥

ତୁମ୍ଭ ଦେହ ଅନ୍ତେ ଦାସ ହୋଇବେ ଅପାର ।
ବନ୍ଧୁତ କାଠ ବନ୍ଧିବେ ହୃଦୟ ଦେଶର ॥

ଜନ୍ମପଣେ ଗୁରୁଠାରେ ନମ୍ରତାଇ ଦୋହ୍ଲୁ ।
ମାଳମାନ ବନ୍ଧୁଥିବେ ବଡ଼ପଣ ବନ୍ଧୁ ॥

ଲେଭବନ୍ତ ଗୁରୁମାନେ କଳରେ ପ୍ରବଳ ।
ନ ବୁଝି ନ ପଢ଼ି ମନ୍ତ୍ର ଦେବେ କର୍ଣ୍ଣମୂଳ ॥

ତନ୍ତ୍ର ଭେଦ ନ ଜାଣେ ଯେ ମନ୍ତ୍ର କି ସେ ପାଏ ।
କଢ଼ି ପୁଷ୍ପେ ଭ୍ରମର ନବଣ ଯେସନ୍ତେ ହୋଏ ॥

ମନ୍ତ୍ରକୁ ବୁଝାଇ ଯେବେ ଯନ୍ତ୍ରକୁ ବୁଝାଇ ।
ତନ୍ତ୍ରକୁ ବୁଝିଣ ଯେବେ ଜ୍ୟୋତିରୂପ ଧ୍ୟାୟି । ୧୫ ।

ଜ୍ୟୋତିର କଳ ଅଟଇ ବ୍ରହ୍ମା ଯେ ଅବାକ୍ତ ।
ଗୁରୁଜନମାନଙ୍କର ଏ ସାଧନା ବଡ଼ ॥

ଏ ସାଧନା ଅଙ୍ଗେ ଥିଲେ ଅଗ୍ନିରୂପ ହୋଇ ।
ପାପମାନେ ଏ ସାଧନେ ଦଗ୍ଧ ଭସ୍ମ ଯାଇ ॥

ଅଚ୍ୟୁତ ଦାସ ଯେ ମୂର୍ଖ କହୁଲି ଗ୍ରନ୍ଥରେ ।
ବାର ଦାସ ଯେ ସାଧନ କର ନିରନ୍ତରେ ॥

ଗୁରୁଭକ୍ତଗୀତା ଏ ଷଷ୍ଠମ ଛାନ୍ଦ ରସ ।
ଶିଷ୍ୟ ହେତୁ ନମନ୍ତ୍ରେଣ କଲଇଁ ପ୍ରକାଶ । ୨୦ ।

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ
ବୋଧନେ ମାଳାସଂଖ୍ୟାନିରୂପଣେ
ନାମ ଷଷ୍ଠପଟଳଃ ।

---

## ସପ୍ତମ ପଟଳ

ବୃନ୍ଦାବନ ଗୋବିନ୍ଦ ପୁଚ୍ଛନ୍ତି ବେଦ ନନ୍ଦ ।
ସମସ୍ତ ସେହ୍ନଣ ଶୁଖ୍ କହିବା ଯତନ ॥

ସ୍ନାନର ଫଳ ଯେ ମୋତେ କହିବା ବୁଝାଇ ।
କେଉଁ କାଳେ ସ୍ନାନ କଲେ କେଉଁ ଫଳ ପାଇ ॥
ଶୁଣ ଆହେ ଗୋପପୁତ୍ର କହିବ ତୁମ୍ଭରେ ।
କେଉଁ କାଳେ ସ୍ନାନ କଲେ କେଉଁ ଫଳ ମିଳେ ॥

ସୂର୍ଯ୍ୟ ଅଣଉଦୟେ ସ୍ନାହାନ ଯଦ କଲ ।
ବତିଶ ଦଣ୍ଡର ଫଳ ହୁଅଇ ତାହାର ॥
ସୂର୍ଯ୍ୟ ଉଦୟ କାଳେ ଯେ ସ୍ନାହାନ କରଇ ।
ଷୋଳଦଣ୍ଡ ଫଳ ପୁଣ ସେ କାଳେ ଲଭଇ ॥ ୫ ॥

ପ୍ରହରକଠାରେ ଯେବେ କରଇ ସ୍ନାହାନ ।
ଆଠ ଦଣ୍ଡ ଫଳ ପୁଣ ଲଭଇ ସେ ଜନ ॥
ଦ୍ୱିତୀୟ ପ୍ରହରେ ଯେବେ ସ୍ନାହାନ କରଇ ।
ଦ୍ୱିଶଖଣ୍ଡ ଫଳ ପୁଣ ସେକାଳେ ଲଭଇ ॥

ସୂର୍ଯ୍ୟ ଅସ୍ତେ ସ୍ନାହାନ କରନ୍ତି ଯେଉଁ ଜନ ।
ଚଉଷଠି ଦଣ୍ଡ ଫଳ ଲଭନ୍ତି ସେ ପୁଣ ॥

ଅଣ ଯେ ଉଦୟ ସ୍ନାନ ଋଷି ବଇଷ୍ଣବ ।
ଉଦୟ ସ୍ନାହାନ ପୁଣ ସଂସାରୀ କରିବ ॥
ଦ୍ୱିତୀୟ ପ୍ରହର ସ୍ନାନ କ୍ଷେତ୍ରିଆ ଜାଣ ।
ତୃତୀୟ ପ୍ରହର ସ୍ନାନ ବାହିରେ ନ ଗଣ ॥ ୧୦ ॥

ଚତୁର୍ଥ ପ୍ରହର ସ୍ନାନ ଫଳ ଅନ୍ତ ନୋହେ ।
ଅସ୍ତ ବାର ସ୍ନାହାନ ସକଳ ଶାସ୍ତ୍ରେ କହେ ॥

ଅଣ ଉଦୟ ସ୍ନାନ ପ୍ରାତଃସ୍ନାନ ଦୁଇ ।
ଏକ ସନ୍ଧ୍ୟା ବୋଲି କରି ତାହାକୁଟି କହ ॥
ଦ୍ୱିତୀୟ ପ୍ରହର ସ୍ନାନ ତୃତୀୟ ପ୍ରହର ।
ଦୁଇ ସନ୍ଧ୍ୟା ବୋଲି କରି ଏଥିର ବିସ୍ତର ॥
ଅନ୍ତ ସ୍ନାନ ରାତ ତ୍ରିସନ୍ଧ୍ୟା ଅଟଇ ।
ରାତ ପ୍ରହରକଠାରୁ କର୍ମ ବିଧି କହ ॥
କର୍ମ ସ୍ନାନ ଏମନ୍ତ ଅଟଇ ପୁଣ ଶୁଣ ।
ତତ୍ତ୍ୱସ୍ନାନ କଲେ ପାପ ହୁଅଇ ଦହନ ॥ ୧୯ ॥

ଗଙ୍ଗା ଯେ ଯମୁନା ସରସ୍ୱତୀ ତିନ ନଈ ।
ଅଙ୍କ ମାତା ଜଳରୁ ସେ ଆସୁଅଛୁ ବହି ।
ସେ ନଦୀରେ ଯେତିମାନେ କରନ୍ତି ସ୍ନାହାନ ।
ଅଖଣ୍ଡ ଫଳ ଲଭନ୍ତି ସେହୁ ପୁଣ୍ୟ ଜନ ॥

ଅକାର ଆକାର ପ୍ରଣବ ସାର ନଈ ।
ଓଁକାରରୁ ଏହୁ ତିନ ଧାରେ ବହି ଯାଇ ॥
ମାତାଗର୍ଭ ପାପ ଯାଏ ଜନ୍ମକର୍ମ ପାପ ।
ପୂର୍ବଜନ୍ମ ପାପମାନ ଖଣ୍ଡଇ ତୁରିତ ॥
ସାଧୁ ବିପ୍ରମାନେ ସେହୁ ଜଳେ ସ୍ନାନ କରି ।
ତ୍ରିବେଣୀ ନଦୀରେ ପୁଣ ପ୍ରାତ ସନ୍ଧ୍ୟା ସାରି ॥
ଜଳସ୍ନାନ ସାରିଣ ଯେ ମନ୍ତ୍ର ସ୍ନାନକରି ।
ମନ୍ତ୍ରସ୍ନାନ ସାରିଣ ଯେ ତ୍ରିବେଣୀ ସୁମରି ॥ ୨୦ ॥

ତିନିବାର ସ୍ନାହାନରେ ଶୁଦ୍ଧ ହୋଏ କାଏ ।
ଜଳେ ସ୍ନାନ କଲେ ଦେହ ମଳ ଛାଡ଼ିଯାଏ ॥
ମନ୍ତ୍ରସ୍ନାନ କଲେ ଦେହ ଶୁଚିବନ୍ତ ହୋଇ ।
ତ୍ରିବେଣୀ ସ୍ନାହାନ କଲେ ପାପ ଧୁଇଯାଇ ॥
ଋଷି ବିପ୍ର ବଇଷ୍ଣବ ପୁଣ୍ୟ ଜନମାନେ ।
ରେଚକ ପୂରକ ଯେ କୁମ୍ଭକ କରି ମନେ ॥

ଭୂର୍ଭୁବଃ ସ୍ୱଃ ମାତୃକା ଯେ କର ଅଙ୍ଗନ୍ୟାସ ।
ଷଡ଼ଙ୍ଗ କବଚ ଭୂତଶୁଦ୍ଧିରେ ପ୍ରକାଶ ॥
ସେହୁ ତ୍ରିବେଣୀରେ ପଶି ସେହୁ ଜପ କରେ ।
ସକଳ ପାତକମାନ ହରନ୍ତି ସେଠାରେ ॥

ଏ ଭେଦ ନ ଜାଣି ଯେ ଜଳରେ ସ୍ନାନ କରେ ।
ଦେହକୁ ଆଶ୍ରମ ଧରେ ଭୋଗ ସୁଖ କରେ ॥
କେ କୃମି ଭେଗକୁ ସୁଖ ଅଛଇଟି ଜଳ ।
ସଂସାର କର୍ମମାନଙ୍କୁ ଅଛଇ କୁଶଳ ॥

ଏହୁ ଗୁରୁଭକ୍ତି ଗୀତା ସପ୍ତମ ଛାନ୍ଦରେ ।
ଅଚ୍ୟୁତ ଦାସ କହଇ ଦ୍ୱିତୀୟ ଖଣ୍ଡରେ ॥ ୨୮ ॥

ଇତି ଶ୍ରୀଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ
ଗୁରୁଶିଷ୍ୟ ବୋଧନେ ସ୍ନାନଯୋଗ କଥନେ
ନାମଃ ସପ୍ତମ ପଟଳଃ ।



# ଅଷ୍ଟମ ପଟଳ

ମୁକୁନ୍ଦ ଅନନ୍ତ ଦାସ ଭୃଥଦାସ ଜନ ।
ଆଜ୍ଞା ହେଉ ଗୁରୁଦେବ ଛାୟା ଭେଦ ଚିହ୍ନି ॥
ଛାୟାର କେମନ୍ତ ଫଳ ଗୁରୁଦେବ କହ ।
କେମନ୍ତେ ସାଧନ ହେବ ଶୁଣିବ ଗୋସାଇଁ ॥

ଶୁଣ ଅହେ ଗୋପସୁତ ଗୁପତ ଏ କଥା ।
ସଦଗୁରୁ ଜାଣନ୍ତି ଯେ ଛାୟାର ବ୍ୟବସ୍ଥା ।
ମାଘ ଯେ ଫଗୁଣ ଭାଦ୍ରମାସ ହୋଇଥିବ ।
ଶୁକଳ ପକ୍ଷରେ ଭଲ ଦିନ ପଡ଼ିଥିବ ॥
ବୃଷ୍ଟି ବଜ୍ରପାତ ଯେ ନ ଥିବ ସେହି ଦିନ ।
ମାହେନ୍ଦ୍ର ବାରୁଣୀ ପଡ଼ିଥିବ ଯୋଗ ମାନ ॥ ୫ ॥

ଶୁଭ ଚନ୍ଦ୍ର ଶୁଭ ତାର ଦେଖି ଶୁଭ ବାର ।
ଛାୟାଭେଦ ଦେଖାଇବ ଅମୃତ ଯୋଗର ॥
କାଳ ସେ ଯେ ଛାୟେଣି ଛାୟାରେ ସେହୁ ମିଶେ ।
ମନୁଷ୍ୟଙ୍କୁ ଜଗିଥାନ୍ତି ରାତ୍ର ଯେ ଦିବସେ ॥
କାହ୍ନା ଯେତେ କର୍ମ କରେ ଛାୟେଣି ଜାଣଇ ।
ଛାୟେଣି ଜାଣିଣ ଛାୟା ଆଗରେ କହଇ ॥
ରାତ୍ର ଦିନ ପାପ ପୁଣ୍ୟ ଲେଖା ହୋଇଥାଇ ।
ସ୍ୱପନସୁନ୍ଦରୀ ତାର ସଖୀଗଣ ହୋଇ ॥

ସ୍ୱପନସୁନ୍ଦରୀ ଛାୟା ଅଗେ କହେ ଯେଣୁ ।
ଯେଉଁ କର୍ମ କରିଥାନ୍ତି ପ୍ରାଣିମାନେ ତେଣୁ ॥ ୧୦ ॥

କାଳପୁରୁଷ ଯେ ତାହା ଲେଖନ କରଇ ।
କାଳ ଯେ ପୁରୁଷ ତାର କରଣ ଅଟଇ ॥

ବହୁତ ପାପ ହୋଇଲେ ଅକାଳ ମରଣ ।
ପୁଣ୍ୟ କରିଥିଲେ କାଳେ ଲଭଇ ମରଣ ॥
କାୟା ଯେ ମିଶଇ ପୁଣ ଛାୟାରେଣ ଯାଇ ।
ଛାଏଣି ପୁଣ ଯେ ଛାଇ ଭିତରେ ପଶଇ ॥
ଧର୍ମ ବୋଲି କହ କହୁ ଛାୟା ଯେ ପୁରୁଷ ।
ଧର୍ମନେଇ ଭେଟାଇଛି ଯମରାଜା ପାଶ ॥
ଏଣୁକରି ଧର୍ମ କଥା ଅତ୍ୟେ କହୁଥିବ ।
ଛାୟାରୂପ ଦରଶନେ ଧର୍ମଫଳ ହେବ ॥ ୧୯ ॥

ନବଘନ ବସ୍ତ୍ର ଏକ କଟେନ ଘଟନ ।
ଶୀତଳ ସ୍ଥା କରିବ ନାନା ବସ୍ତ୍ରମାନ ॥
ଏକଦୃଷ୍ଟି ରଖିବ ଯେ ଛାଏଣି ଶିରରେ ।
ଛାଏଣି ଶିରକୁ ଦୃଷ୍ଟି ଦେବ ଛାଇଠାରେ ॥
ଧବଳ ଶରୀର ଯେବେ ଆକାଶେ ଦିଶିବ ।
ପ୍ରସନ୍ନ ହୋଇଲେ ବୋଲି ନିଶ୍ଚୟବୋଧ ହେବ ॥
ଶିର ଯଦି ନ ଦିଶିବ ଛାଇର ପ୍ରମାଣ ।
ଷଣ୍ମାସ ପ୍ରେ ଜାଣିବ ସେ ପିତ୍ରର ମରଣ ।
ହସ୍ତ ନ ଦିଶିଲେ ଭ୍ରାତା ନିକଟେ ମରଇ ।
ପାଦ ନ ଦିଶିଲେ ତାର ପୁତ୍ର ନାଶ ଯାଇ ॥ ୨୦ ॥

ଉଦର ଯେ ନ ଦିଶିଲେ ମାତୃ ହୋଏ ହତ ।
ଛାୟା ବକ୍ଷ ନ ଦିଶିଲେ ଆପେ ହୋଏ ହତ ॥
ବଣ ଭାବ ହୋଇଲେ ଯେ ହଏ ବହୁଦୁଃଖ ।
ଛାୟା ଦରଶନେ ପୁଣ ଜାଣିବ ଏତେକ ॥
ଗୁଣବାନ ପ୍ରାଣୀ ଯେବେ ଏହା ଭେଦପାରେ ।
ଧର୍ମକଥା କହୁଥାଇ ଜଣି ଉବସରେ ॥
ଛାୟାର ଯେ ଅଙ୍ଗ ଜାଣ ଓଁକାର ଅଟଇ ।
ଓଁ କାର ଯେ ବ୍ରହ୍ମରୂପ ଅଟନ୍ତି ସେହି ॥

ଶ୍ୱେତ ଅନନ୍ତ ରୂପକୁ ଧ୍ୟାନ ଯେ କରିବ ।
ନଠ ଠନ ବେଳେ ତାଙ୍କୁ ଦର୍ଶନ କରିବ । ୨୫ ।
ହ୍ରୀ ବ୍ରହ୍ମ ସ୍ୱରୂପ ବୋଲିଣ ସେ ନମିବ ।
ଅଚ୍ୟୁତର ଗଣ ସେହୁ ଏହା ଯେ ବୁଝିବ ॥
ଗୁରୁଭକ୍ତ ଗୀତା ଦ୍ୱିତୀୟଖଣ୍ଡର ବାଣୀ ।
ଅଷ୍ଟମ ଛନ୍ଦ ଏ ଛାୟା ବ୍ରହ୍ମର କାହାଣୀ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତାୟାଂ ଦ୍ୱିତୀୟଖଣ୍ଡେ
ଗୁରୁଶିଷ୍ୟବୋଧନେ ଛାୟାରୂପ କଥନେ
ନାମ ଅଷ୍ଟମ ପଟଳଃ ।



# ନବମ ପଟଳ

ଶୁଣ ହେ ଚନ୍ଦଣ ତୁମ୍ଭେ ସ୍ରମ ବିଷ୍ଣୁ ଦାସ ।
ଅବାଙ୍କ ଜ୍ୟୋତିଙ୍କ ସେ ଯେ ମନେ ତୁମ୍ଭେ ଘୋଷ ।।

ଚକ୍ଷୁ ଫେଡ଼ି ତ୍ରିକୁଟକୁ ଯେବେ ଲକ୍ଷ୍ୟ କର ।
ସେ ପଥକୁ ସାଧୁମାନେ ପାରନ୍ତି ଯେ ଧର ।।

ଉଜ୍ଜ୍ୱଳର ମାଳା ପ୍ରାୟେ ଦଶଇ ଯତନ ।।
ଚକ୍ଷୁରେ ଶୁଦ୍ଧିଲେ ସେ ଯେ ହୁଅନ୍ତି ପ୍ରସନ୍ନ ।।

ମନ୍ତ୍ର ସୁମରଣା ସାର ଏରୂପ ଦର୍ଶନ ।
ଗୋପୀ ଗୋପାଳ କରଣ ଅଟନ୍ତି ପ୍ରମାଣ ।।

ସେ ବସ୍ତୁ ଗୋଟିକେ ଗୋପୀ ଗୋପାଳ ରେ ହିଏ ।
ଘଟେ ଘଟେ ଲୀଳାକର ଗୁପତେ ଯେ ରହେ ।। ୯ ।।

ଗୁପତୁଁ ଗୁପତ ଏ ଯେ ଗୁରୁଙ୍କର ସାର ।
ଉତ୍ତମ ଶିଷ୍ୟ ଜାଣନ୍ତି ଏଥିର ବିଚାର ।।

ମାଘମାସ ଏକଦଶୀ ଫଗୁଣ ବୈଶାଖ ।
ସୁଦଣ୍ଡ ତଥି ଯେ ପଢ଼ୁଥିବ ଭଲ ଯୋଗ ।।

ଶୀତଳ ମଣୋହ୍ନ କର ବସ୍ତ୍ର ଫୁଲ ପ ନ ।
ଶିଷ୍ୟଙ୍କୁ ଗୁରୁ ଯେ ପୂଜି କରାଇ ଦର୍ଶନ ।।

ତେବେ ଶିଷ୍ୟ ଜୀବର ମୋକ୍ଷଗତି ପାଏ ।
ଏ ଭେଦ ନ ଜାଣି ଗୁରୁ ଶିଷ୍ୟ କରୁଥାଏ ।।

ଶିଷ୍ୟର ସଂଶୟମାନ ନ ଯାଇ ହୃଦରେ ।
ବାତ୍ୟେ ଯେସନ୍ତେ ନାବ ଘୂର୍ଣ୍ଣି ବୁଲଇ ନଦୀରେ ।। ୧୦ ।।

ଯନ୍ତ୍ର ମନ୍ତ୍ର ତନ୍ତ୍ର ଗ୍ରନ୍ଥ ଆଦି ଯେ ଅବାଙ୍କ ।
ଗୁରୁ ଶିଷ୍ୟ ଜନ୍ମେର ଭଜୁଥିବ ଦୃଢ଼ ।।

ଶ୍ରୀ ଅବାଦ୍ୟାୟ ନମଃ ସୁମରଣା କରି ।
ସକଳ ପାତକ ଯିବ ମନ୍ତ୍ରକୁ ସୁମରି ॥
ମୁକୁନ୍ଦ ଗୁହାସ ଶୁଣ ଅନନ୍ତ ପ୍ରଧାନ ।
ମଥୁରୀ ସୁଦାମ ମନେ ହେତୁ କର ଜେନ ॥
କଳିକାଳ ଘୋଟିବ ଯେ ଏ ଘୋର ସଂସାର ।
ପଢେ ଅଧେ ଶିଖି ଗୁରୁ ହୋଇବେ ଅପାର ॥

ପେଟର କମନ୍ତ୍ରେ ଘରେ ଘରେ ଫେରୁଥିବେ ।
ବସ୍ତ୍ର ପଣ୍ଡେ କମନ୍ତ୍ରେଣ ଗୁରୁ ବୋଲାଇବେ ॥ ୧୯ ॥
ଅମେଧ ଆହାରକରି ବଡପଣେ କାନ୍ଧ ।
ପାଦାନ୍ତ ତୁରଙ୍ଗ ଚଢ଼ି ହୋଇବେ ଅନ୍ଧ ॥
କୁକ୍କୁର ମାଙ୍କଡ଼ ଶୁଆ ପଞ୍ଜୁରୀ ପୋଷିବେ ।
ନିଜ ଧର୍ମ କରିବେ ବ୍ରାହ୍ମଣ ଏଡ଼ିବେ ॥

ସତ୍ୟଯୁଗେ ମୁନିମାନେ ଗ୍ରନ୍ଥ ଏଡ଼ିଲେ ।
ତ୍ରେତାଯୁଗେ ଫଳ ମୂଳ ଖାଇଣ ବଞ୍ଚିଲେ ॥
ଦ୍ୱାପର ଯୁଗରେ ବନେ ରଖି ବସ୍ତ୍ରା ଗାଈ ।
କଳିଯୁଗେ [illegible] ନାମ [illegible] ।
ଶ୍ରୀଚୈତନ୍ୟ ନାମ [illegible] ଯେତେ ଯେତେ [illegible]
ଚୈତନ୍ୟ କରୁଣା ଯେ ତୁମ୍ଭଙ୍କ ଛନ୍ତି କର ॥ ୨୦ ॥

ବାର ଗୋପ ଗ୍ରନ୍ଥ ସରେ ଅଷ୍ଟ ତୁମ୍ଭେ ସାର ।
ତୁମ୍ଭରେ ଉଚ୍ଛନ୍ନ ହେବ ଓଡ଼ିଶା ସଂସାର ॥
ତୁମ୍ଭ ଶିଷ୍ୟଗଣ ଶିଷ୍ୟ ହୋଇବେ ବହୁତ ।
ତ୍ରିଶ ପୁଷ୍ଟ ଜଗତେ ଭଗତ ତୋଷ ଚିତ୍ତ ॥
ପୂର୍ବର ବାସନା ଥିଲା ନୀଳାଚଳେ ଗଲି ।
ସିଂହଦ୍ୱାରଠାରେ ପ୍ରଭୁ ଚୈତନ୍ୟ ମିଳିଲି ॥
ମୁକୁନ୍ଦ ଅନନ୍ତ ପିତା ତାଙ୍କ ପାଦେ ପଡ଼ି ।
ଖୋଳ କରତାଳ ଯେ ତୁମ୍ଭଙ୍କୁ ଦେଲେ କାଢ଼ି ॥

ପୂଜା ହେବା କରି ତାଙ୍କୁ ବନୋସ୍ତୀ ହୋଇଲେ ।
ଏବାଳକମାନଙ୍କୁ ଯେ ଦୟାହେବ ଭଲେ । ୨୫ ।

ମଥୁରା ସୁଦାମ ପିତା କହିଲେ ବୁଝାଇ ।
ଗୋବନ୍ଦ ବସ୍ତ୍ରଙ୍କ ପିତା ସ୍ତୁତ ପୁଣ କହି ॥
ଏମନ୍ତ କରି ହଁଙ୍କଡ଼ ସଂଗତା ମଣ୍ଡଳେ ।
ତୁମ୍ଭେ ଲୀଳା କର ଏବେ ବାର ଗୋପମେଳେ ॥

ଏମନ୍ତ ବୋଲିଣ ରାମ କହୁଥିଲ ମୋରେ ।
ମୋର ଚିତ୍ତ ରହୁଥିଲା ତୁମ୍ଭ ଗପଠାରେ ॥
ଏଣୁକରି ବଇଶାଖ ମାସେ ଅଣାଇଲୁ ।
ତୁମ୍ଭଙ୍କୁ ଦେଖିଣ ଯେ ବହୁତ ସୁଖୀ ହେଲୁ ॥
ଗୋପକୂଳ ହୁଙ୍କାର ଯେ ଘରେ ଘରେ ମିଳ ।
ପୂର୍ବ ପଦ ବନ୍ଧୁଲେଖା କୁଟୁମ୍ବ ଶଙ୍ଗୋଳ ॥ ୩୦ ॥

ଆମ୍ଭପୁଜ ଅଂଶବୋଲି ତୁମ୍ଭରେ ମିଶିବେ ।
ମାଳ ଯେ ତିଳକ ବସ୍ତ୍ର ଖୋଳ କଳାଇବେ ॥
କରତାଳ ହସ୍ତରେ ବାଇ ରାସଲୀଳା ନାଇ ।
ବଢ଼ିବ ଯେ ଅଂଶମାନ ବହୁତ ଯେ ହୋଇ ॥

ଅନ୍ତରର ଶିଷ୍ୟ ରାମ ଭକ୍ତ ବେନଜନ ।
ରାମ ଭକ୍ତ ସୁତ ତୁମ୍ଭେ ବାର ମହାଜନ ॥
ହରିର ନଶୀଳ କରି ସଂସାର ହୁଙ୍କାର ।
ଶ୍ରୀ କୃଷ୍ଣର ଲୀଳା ଯେତେ ଦେଖନ୍ତୁ ସଂସାର ॥
ଷାଠିଏ ଦଣ୍ଡ ଯେ ଅଷ୍ଟ ପ୍ରହର ସଙ୍ଗୀତ ।
ତୁମ୍ଭଙ୍କ ହବାର ନାହିଁ ବାନାର ବଳେ ତ ॥ ୩୫ ॥

ଶୂଦ୍ରକୁଳେ କପଟେ ଜନମ ଆମ୍ଭେ ହୋଇ ।
ହମାନ ଜମନ୍ତେ ଗୋପେ ଜନ୍ମ ହେଲୁ ତହିଁ ॥

କଳିଯୁଗ ମଧ୍ୟେ ତୁମ୍ଭେ ଆମ୍ଭେ ଏକ ମତ ।
ନୀର କ୍ଷୀର ଯେମନ୍ତ ଅଟଇ ଅଭେଦତ ॥

ସ୍ୱାମୀ ନାସ୍ତି ପିତା ପୁତ୍ର ଯେମନ୍ତ ପୀରତି ।
ବାବୁ ଗୋପମୁଖ୍ୟ ଅଛ ଅମ୍ଭର ଯେ ପ୍ରୀତି ॥
ଆଦି ଅନାଦି କାନ୍ହୁ ଗୋପର ଭୂଷଣ ।
ଶିକ୍ଷ ଚହ୍ନାପନା କାର୍ଯ୍ୟ ଅକାର୍ଯ୍ୟରେ ପୁଣ ॥

କଳିଯୁଗେ କୃଷ୍ଣ କଥା ଅଛଇଟି ସାର ।
ଧନ ଅଚ୍ୟୁତ କହନ୍ତି ଶିଷ୍ୟଙ୍କ ଅଗର ॥ ୪୦ ॥

ଗୁରୁଭକ୍ତିଗୀତା ଯେ ଦ୍ୱିତୀୟ ଖଣ୍ଡ ରସ ।
ନବମ ଛାନ୍ଦ କହିଲି ଶୁଣି ହୃଅ ତୋଷ ॥ ୪୧ ॥

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ ବୋଧନେ
ଜ୍ୟୋତିବନ୍ଧ କଥନେ ନାମ ନବମ ପଟଳଃ ।



## ଦଶମ ପଟଳ

ମୁକୁନ୍ଦ ଅନନ୍ତ ବସ୍ତ୍ର ବାଳକ ମଥୁରା ।
ଜ୍ୟୋତିସାନନ୍ଦ ମୁରଣ୍ଡ ଜେମନ୍ତେ ସୁମରି ॥

ପଞ୍ଚରୁ ବାର ଗୋପାଳ କହୁବା ପ୍ରମାଣ ।
ଶ୍ରୀଗୁରୁ ପରମଗୁରୁ କହୁ ପଶଛନ୍ତି ॥

ଶୁଣି ଗଦଗଦ ପ୍ରେମେ ବହୁଇ ନେତ୍ରକ ।
ରାମଚନ୍ଦ୍ର ଶିଷ୍ୟ ପୃଚ୍ଛି ବଡ଼ ଆଚମ୍ବିତ ॥

କୋଟିକେ ଗୋଟିଏ ସାଂଖ୍ୟା କରନ୍ତି ପ୍ରମାଣ ।
ଏଥି ଅନ୍ୟ ନାହିଁ ଗତି କଲି ସୁମରଣ ।

ସଦଗୁରୁ ମିଳିଲେ ସେ ହାତ ମାରଦେଇ ।
ସେ ସ୍ଥାନ ଚହ୍ନାଇ ତାକୁ ଦଅନ୍ତି ଦେଖାଇ ॥ ୯ ॥

କହୁବା ତହିଁର ପୂଜା ଶୁଣ ଏକମନ ।
ରାମ ଭ୍ରଥଠାରୁ ପଇଅଛ ବାରଜଣ ॥

ସଂଶୟ ଫିଟିବା ପାଇଁ ଆତ୍ମଙ୍କୁ ପୃଚ୍ଛିଲ ।
ମନର ସଂଶୟ ଯିବ ଭଲ ବସ୍ତୁଖଲ ॥

ମାଘ ବୈଶାଖ ଭାଦ୍ରବ ଯଦ୍ୱା ବା ଫଗୁଣ ।
ଶୁକଳ ପକ୍ଷ ହୋଇବ ଉତ୍ତମ ବାରେଣ ॥

ଏ ମାସମାନଙ୍କେ ପୂଜାବିଧି ସେ ଯେ କର ।
ଗୁରୁ ଶୁକ୍ର ସୋମବାର ବୃଧ ସେ ବିଚାର ॥

ତାର ଚନ୍ଦ୍ର ଯୋଗମାନ ଉତ୍ତମ ବୁଝିବ ।
ଏମାନ ବୁଝିଣ ଯେ ଯେ ଦର୍ଶନ କରିବ । ୧୦ ।

ଦରଶୀ ସ୍ତବରେ ତାଙ୍କ ମନ ଦୃଢ଼ ହେବ ।
ଏମାନ ବୃଟି ଦେଖିଲେ ଉତ୍ତମ ଯେ ହେବ ॥

ଉଦେ ସୂର୍ଯ୍ୟ ପରି ଏକା ଦଶେ ଯାର କାନ୍ତି ।
ସେରୂପ ଦର୍ଶନକଲେ ପାପ ଘୁଞ୍ଚିଯାନ୍ତି ॥

ଝିଟକ ବିଜୁଳିପରି ଦିଶଇ ଯେ ଜାଣ ।
ଦର୍ଶନ ମାତ୍ରକେ ପୂର୍ବପାପ ଯେ ଖଣ୍ଡନ ॥

ଦଗଧ ସୁବର୍ଣ୍ଣପ୍ରାୟେ ଆବର ଦିଶନ୍ତି ।
ଦରଶନେ ବୃଷଳୀ ପାତକ ନାଶ ଯାନ୍ତି ॥

କାନଶ୍ରୀ ପୁଷ୍ପର ପ୍ରାୟେ ଦିଶଇ ଯେ ବର୍ଣ୍ଣ ।
ଦେଖିଲେ ମାତୃହରଣ ଦୋଷ ଯେ ଖଣ୍ଡନ । ୧୫ ।

ଏମନ୍ତେଣ ଅଷ୍ଟାଦଶ କଳା ଯେ ଅଟଇ ।
ଅଷ୍ଟଗୋଟି ରୂପେ ଅଷ୍ଟ କୋଟି ପାପ ଦହି ॥

ଏ ରୂପ ନ ଚିହ୍ନି ବଡ଼ ହୋଇବେ ମହନ୍ତ ।
ମାର ଧର ବାନ୍ଧରେ ଯେ ହୋଇବେ ମମତ ॥

ବନ୍ଧା ନଟ ନ ପାଇଣ କଉଡ଼ିରେ ଚିତ୍ତ ।
ଏ ବୃଦ୍ଧି ବସ୍ତୁକଲେ ଯେ ନ ମିଳିବ ସ୍ଥିତ ।

ପାପ ନ ଛେଦିଣ ପାପ ପଦାର୍ଥ ଭକ୍ଷିବେ ।
ତେଣୁକରି ପୁନ ନାଥ ଲକ୍ଷ୍ମୀନ ହେବେ ॥

ସତ ଶାନ୍ତି ଦୟା କ୍ଷମା ନ ଧରିବେ ଚିତ୍ତ ।
ଘୃତ ଦୁଧ ଭୋଗ ଭୁଞ୍ଜି ପେଟ ବଢ଼ ମତ । ୨୦ ।

ଏମନ୍ତ ଜନବଠାରେ ଯେ ସାଧନା କରି ।
କ୍ୟୋଠ ଭଜନଙ୍କୁ ଭୋଗ ଅଟଇ ବଇରୀ ॥

ଅଳପ ଭୋଗ ଭୁଞ୍ଜିଣ କ୍ଷୀଣ ହୁଏ ଦେହ ।
ପବନେ ପକ୍ଷୀ ଭଜିଲେ କରଇ ଯେ ସ୍ନେହ ॥

ପଲକେ ପଲକେ ଲକ୍ଷ୍ୟ ଲଗାଇଣ ଥାଇ ।
ଏମନ୍ତ ଅଗେଣ ପାପ ଦୃଷ୍ଟି ଯାଉଥାଇ ।।

ଶୁଣ ହୋ ଚତୁର ଗୋପ ଗୋବିନ୍ଦ ମଥୁର ।
ନିରନ୍ତରେ ସାଧୁଥିବ ଏହିରୂପ ସ୍ମର ।।

କଳିଯୁଗେ ଏ କଥାରେ ନ ବଳିବ ଚିତ୍ତ ।
ଗୁପତେଣେ ଥିବେ ଗ୍ରାମେ ଗ୍ରାମେ ଏକମତ । ୨୬ ।

ମନ୍ତ୍ର ଜପମାଳ କର ଦମ୍ଭପଣେ ଥିବେ ।
ଅଙ୍ଗୁଷ୍ଟ ଭେଦ ନ ଜାଣି ତର୍ଜନୀ ଭଜିବେ ।।

ଅଭକ୍ଷ୍ୟ ଭକ୍ଷିଣ ହିଂସା ବଢୁଥିବେ ଚିତ୍ତେ ।
ଗୁରୁଶିଷ୍ୟ ମନ୍ତ୍ର ଶାସ୍ତ୍ରେ ନୋହିବେ ନିର୍ଜିତେ ।।

ଗୁରୁମାନେ ଉଜୁଥିବେ ବସନ କଉଡ଼ି ।
କଉଡ଼ି ନ ଦେଲେ ଶିଷ୍ୟ ଦେବେଟି ପଉଡ଼ି ।।

ଦ୍ୱାରେ ଦ୍ୱାରେ ଗୁରୁ ବୁଲୁଥିବେ ନଗରରେ ।
ନ ଥିଲି ଶିଷ୍ୟ ଲୁଚିବ ବଣର ଭିତରେ ।

ଗୁରୁଙ୍କ ଲୋଭ ହୃଦସ୍ତ ଶିଷ୍ୟ ଜାଣି କରି
ମନେ ବିଗୁଣିବ ଗଲେ ପକାଇବେ ମାରି । ୩୦ ।

ହସ୍ତେ ପଣେ ନାହିଁ ମୁଣ୍ଡି କାହୁଁ ଦେବ ପୁଣ ।
ଏଣୁ କରି ଗୁରୁଶିଷ୍ୟ ହେବେ ରଣଭଣ ।।

ନଷ୍ଟ ଭ୍ରଷ୍ଟ ହୋଇ ଧର୍ମ ପଥ ସେ ବୁଡ଼ିବ ।
ଭେକରେ ବଢୁଛ ପୁଣ କଳଙ୍କ ଲାଗିବ ।।

ତୁମ୍ଭେ ବାର ଗୋପ ମୋର ସହ୍ୱାସ ପ୍ରଧାନ ।
ଠାକୁର ଅଙ୍ଗରେ ତୁମ୍ଭେ ଜାତ ବାରଜଣ ।।

ସାକ୍ଷାତରେ ଶ୍ରୀ ଚୈତନ୍ୟ କଲି ଦରଶନ ।
ଚୈତନ୍ୟ ମଣ୍ଡଳୀ ନୀଳାଚଳ ସେ ଭୁବନ ।

ଆମ୍ଭର କରୁଣା ପୁଣ ହୋଇଲା ତୁମ୍ଭରେ ।
ଅଚ୍ୟୁତ କହିଲେ ଯାହା ଗୁପତ ଛନ୍ଦରେ ॥ ୩୫ ॥

ପ୍ରକାଶ କଲେ ବିପତ୍ତି ଦରିଦ୍ର ଯୋଗ ହେବ ।
ବଡ଼ମ୍ବନ ଅପବାଦ କୁଷ୍ଠ ହୋଇବ ଦେହେ ॥ ୩୬ ॥

**ଇତି ଶ୍ରୀଗୁରୁଭକ୍ତିଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟବୋଧନେ କଳି ବ୍ୟବହାର କଥନେ ନାମ ଦଶମ ପଟଳଃ ।**



# ଏକାଦଶ ପଟଳ

ସନ୍ଦୁଳ ସମାଧିସ୍ଥର କନ୍ଦୁଳ ପ୍ରମାଣ ।
ହନ୍ଦୁବା ସମାଧି ପୁଣ କନ୍ଦୁବା ଲକ୍ଷଣ ॥
ରୋମମାନ ପୁଲକିତ ନିରନ୍ତେଣ ଚକ୍ଷୁ ।
ରାମଚନ୍ଦ୍ର କନ୍ଦୁ କଥ ପଥ୍ୟରେ ତୋ ସୁତ ॥

କରପଦ୍ମ ଯୋଡ଼ିଣ ଯେ ରାମଚନ୍ଦ୍ର କନ୍ଦୁ ।
ପଞ୍ଚସଖା ବକତା ଯେ ଶ୍ରୋତା ଛନ୍ଦ ଦ୍ୱୋହି ।
ପଞ୍ଚସଖା ଆନନ୍ଦ ମୁକୁନ୍ଦ ବୃନ୍ଦାବନ ।
ଅନନ୍ତ ମଥୁର ବାସ୍ତ ଗୋବିନ୍ଦ ପବନ ॥
ଶ୍ରୋତା ଅଙ୍ଗ ରାମ ଭୃଠ ବନ୍ଦ ବିଷ୍ଣୁ ଦାସ ।
ଧରମୁ ଦକ୍ଷିଣ ଚନ୍ଦ୍ର ବେନ୍ଦ ଯେ ପାରୁଣ ॥ ୯ ॥

ବକତା ଅଙ୍ଗ ଧରଣି ଶ୍ରୀ ଅଚ୍ୟୁତ ତୁମ୍ଭେ ।
ତୁମ୍ଭେ ଯାହା କନ୍ଦୁବ ଯେ ବୁଝାଇବୁ ଆମ୍ଭେ ॥
ଏ ଗୋପଜନ କନ୍ଦୁବେ ବୁଲିଣ ସଂସାରେ ।
ଅଭେଦମାନ ତ୍ରୁଡ଼ିଣ ଏହାଙ୍କ ସଙ୍ଗରେ ॥

ରାମଚନ୍ଦ୍ର ବାକ୍ୟ ଶୁଣି କନ୍ଦୁ ନିରନ୍ତେଣ ।
ଚବିଶ ଗୋପାଳ ତୁମ୍ଭେ ସାବଧାନେ ଶୁଣ ॥
ଚତୁଅରୁ ଛଡ଼ରୁ ଯେ ଦଶରେ ମିଶିବ ।
ଦଶକୁ ନେଇଣ ଦ୍ୱାଦଶରେ ମେଳାଇବ ॥

ଦ୍ୱାଦଶ ମେଳିବ ପୁଣ ଷୋଳ ଭୁବନରେ ।
ଷୋଳକୁ ରଖିବ ବ୍ରଣ ଅଷ୍ଟ ଯେ ଆନରେ ॥ ୧୦ ॥

ସ୍ମର ରହିବ ଯେ ବନକନ୍ଷଣୀ ଠାବରେ ।
ଦ୍ୱାଦଶ ଫେଣା ରହିବ ଘଣ୍ଟାନାଦଠାରେ ॥

ଘଣ୍ଟାନାଦଠାରେ ଶିଶୁମୁନାରେ ଛନ୍ଦବ ।
ଜଡ ଜଡ ଦଣ୍ଡେ ଦଣ୍ଡେ ସାଧନ କରିବ ।।

ବାର ବର୍ଷର ଯଏ ସାଧନା ଯେ କରି ।
ସାନକଲେ ଗୁରୁଠାରେ ଥିବ ସେ ପଗ୍ଭରି ।।

ଅଇଲେ ଆସଇ ଜୀବ ନଇଲେ ନ ଆସେ ।
ଦ୍ୱାରମାନ ଜଗିଆନ୍ତି ଏଣୁ ଅଂଶେ ଅଂଶେ ।।

ମରଣ କାଳ ଜାଣିଣ ସେହି ପଥେ ଯାନ୍ତି ।
ଜୀବ ଥିବାଯାକେ କିଛି କିଛି ସାଧିଥାନ୍ତି ।। ୧୫ ।।

ଏ ଭକ୍ତି ଯୋଗ ଯେ ସାଧେ ତାକୁ ସାଧୁ କହି ।
ଏହା ଯେ ନ ସାଧେ ସେହି ଭୁଲ ମରୁଆଇ ।।

ଗତି ନ ପ ବନ୍ତି ସେହି ମରଣ କାଳେଣ ।
କଫ ବାଟେ ମନ୍ତ୍ର ଜପ ନୁହଇଟି ପୁଣ ।।

ଏ ସାଧନା ଲଘୁ କରି ମୃତ୍ୟୁ ଯେବେ ହୋଏ ।
ଲେଉଟିଣ ସାଧୁଘରେ ଜାତ ହୋଉଥାଏ ।।

ପାଞ୍ଚ ଯେ ବରଷଠାରେ ମନ୍ତ୍ର ଶିଖିଇବ ।
ଦଶ ଯେ ବରଷଠାରେ ଯନ୍ତ୍ର ବୁଝାଇବ ।।

ପନ୍ଦର ବରଷଠାରେ ତନ୍ତ୍ରକୁ ଶିଖିବ ।
ଷୋଡ଼ଏ ବରଷଠାରେ ସାଧନାକୁ କହି ।
ପଚିଶ ବରଷଠାରେ ଗୁସ୍ୱାରୂପ ଧ୍ୟାଇ ।।

ଜ୍ୟୋତି ଦେଖାଇବ ପୁଣି ତିରିଶ ବରଷେ ।
ପଞ୍ଚତ୍ରିଂଶ ଠାବରେ ସେ ସମାଧି ପ୍ରବେଶେ ।।

ଦ୍ୱିଜଦ୍ୱାର ଗମିବ ଯେ ଚାଳିଶ ବରଷେ ।
ରସ ଗୁଣ କହୁଥିବ ମୃତ୍ୟୁ ପରବେଶେ ।।

ଅଷ୍ଟକାଳ ଷାଠି ଦଣ୍ଡ ତନ ଧୂପ ଜ୍ୱାଳା ।
ପଞ୍ଚଧୂପ ନଇବେଦ୍ୟ ଭଗତର ଖେଳା ।।

ଶ୍ଳୋକ

ସତ୍ତ୍ୱଂ ମନ୍ତ୍ରଂ ତନ୍ତ୍ରଞ୍ଚୈବ  ତ୍ରୁଟ୍ୟା କୋ୍ୟାଡରବାଡ଼କଂ
ଦ୍ୱଜ ସମାଧି  ଉପଗୁଣଂ ଚ ଯୋଜାନାତି ସ ବୈଷ୍ଣବାଃ ।
ଏ ଅଷ୍ଟଗୁଣ ନ ଜାନାମି ମନୁ ନ ଦ୍ୱରେ ସଂଶୟଃ ।
ସବ ଶାସ୍ତ୍ର ଅନ୍ଧକାର ସଗୁଣନିର୍ଗୁଣଃ ସଦା ॥
ଶୁଣ ଆହେ ଗୋପପୁତ୍ର ଭଗତିର କଥା ।
ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା ॥ ୬୫ ॥
ଦୁଇ ଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ ।
ଦୁଇ ଯେ  ଚକ୍ଷୁରେ ସେହୁ ସଂସାରେ ଖେଳଇ ॥
ଏକ ଯେ ନ ଥିଲେ କଣା ଦୁଇଗଲେ ଅନ୍ଧ ।
ଏଣୁ କରି ନିର୍ଗୁଣ  ସଗୁଣ ସେହୁ ଭେଦ ॥
ସତ୍ତ୍ୱ ମନ୍ତ୍ର ତନ୍ତ୍ର ଗ୍ରାମ ଏହୁ ବୃତି ଗୁଣ ।
ସଗୁଣ ଯାହାକୁ ବୋଲେ ଏହୁ କଥା ଶୁଣ ॥
ତ୍ରୁଟ୍ୟା ଅବାଡ଼ କୋ୍ୟାଡ ଯେ ଏହୁଟି ସମାଧି ।
ଏ ଗୁଣ ନିର୍ଗୁଣ ବୋଲି ପାଶଲେଟି ସାଧି ॥

ବୋଲି ବାଣୀରେ ଗାଇବ :—

ଗୁରୁ ଶିଷ୍ୟ ଯେବେ ଏହା ନ ଜାଣି ।
କଣା ବୋଲି ଶାସ୍ତ୍ରେ ତାକୁ ବଖାଣି ॥ ୬୦ ॥

ଦୁଇ ନ ଜାଣିଲେ ଅଟଇ ଅନ୍ଧ ।
ଗୀତା ଭାଗବତ ପୁରାଣ ବେଦ ॥
ବ୍ରହ୍ମଚେତା ସାଧୁ ପଣ୍ଡିତ ଜନେ ।
ଏହା ବୁଝିଣ ଯେ ବାନ୍ଧଇ ମନେ ॥
ଧନ ଦାର ସୁତପଣ ଛାଡ଼ିଲେ ।
ରାମ ଚରଣେ ସେ ମନକୁ ଦେଲେ ॥

ଗୁରୁ ପରମ ଗୁରୁ ଆଶ୍ରେ କରି ।
ନିସ୍ତାର ପଦକୁ ଅଛୁ ଆବୋରି ॥

କୃଷ୍ଣ ରସ ଗୁଣ ଗୁଣ୍ଠିତ ଶ୍ରବ ।
ତତ୍ତ୍ୱ ଭଜନ ମନରେ କରିବ । ୩୫ ।

ଆପଣ ତରିବ ପରେ ନିସ୍ତାର ।
ବାରଟିଆ ଗୋପ ଗୋପାଳ ପର ॥

ସନ୍ନ୍ୟାସେ ମିଶିବେ ଯେତେକ ଜନ ।
ତାଙ୍କର ଗୁରୁ ତୁମ୍ଭେ ବର ଜାଣ ॥
ତୁମ୍ଭ ଶିକ୍ଷା ପାଇ ହୋଇବେ ଦାସ ।
ତୁମ୍ଭ ଦେଲ ଅଂଶରାସେ ପ୍ରବେଶ ॥

ପାଞ୍ଚ ଗୋପାଳ ସୁତ ଗୋପଦରେ ।
ଏ ଅଂଶ ବଢ଼ିଥିବ କରନ୍ତରେ ॥
ମୂଢ଼ ସଙ୍ଗତେ ବୁଦ୍ଧି ଭ୍ରମ ହେବ ।
ବୀଜ ଗୁଣ ତନ୍ତୁ ବଢ଼ ହୋଇବ । ୪୦ ।

ଆପଣା କରଣି ରହିବ ନାହିଁ ।
ତତ୍ତ୍ୱ ଭଜନରେ ମନ ନ ଦେଇ ॥
ତୁମ୍ଭ ଅଂଶେ ସବେ ରସେ ମଜ୍ଜିବେ ।
ଭଜନ ଭାବରେ ରହିବେ ସବେ ॥
ବୃନ୍ଦାବନ ଗ୍ରାମ କର ଘୋଷଣ ।
ଅଚ୍ୟୁତର ପଣ କହିଥ ଝାଣ ॥

ଗୁରୁଭକ୍ତି ଗୀତା ଦ୍ୱିତୀୟଖଣ୍ଡ ।
ଏ ଗ୍ରନ୍ଥ ଅଟଇ ଅମୃତ କୁଣ୍ଡ ॥
ଗୁପତୁ ଗୁପତ ଅଟଇ ବେଦ ।
ଗୃହେ ଥିଲେ ଧନ ଜନ ବଢ଼ଇ । ୪୫ ।

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁ ଶିଷ୍ୟ ବୋଧନେ ସଗୁଣ ନିର୍ଗୁଣ ସମ୍ବାଦ ଯୋଗ କଥନେ ନାମ ଏକାଦଶ ପଟଳଃ ।

---

## ଦ୍ୱାଦଶ ପଟଳ

କଥାଏ ପୁଚ୍ଛିବା ଗୁରୁ କହିବ ବୁଝାଇ ।
ତନ୍ତ୍ରର ବସ୍ତୁର ପ୍ରଭୁ କେମନ୍ତ ଅଛଇ ॥
ଗୁରୁଦେବ ରାମଚନ୍ଦ୍ର ବାର ଗୋପାଳର ।
ରାମଚନ୍ଦ୍ର ଗୁରୁକଲେ ତୁମ୍ଭ ଯେ ଠାବର ॥

ଆମ୍ଭର ଯେ ଅଜା ଗୁରୁ ପୁଣ ତୁମ୍ଭେ ହୁଅ ।
ତୁମ୍ଭ ଶିଷ୍ୟ କହିଲେ ଯେ ଫିଟିବ ସଂଶୟ ॥
ରାମ ଭଟ୍ଟ ଦୁଇଗୁରୁ ରହାସରେ ସାର ।
ଆଉ ଦଶ ଶିଷ୍ୟଙ୍କର ନାହିଁ ଅଧିକାର ॥

ଧର୍ମ ବସ୍ତୁ ବନ୍ଧ ମୂର୍ତ୍ତି ସେ ଗୋପାଳଙ୍କର ।
ରହାସ ସାଧନ ଶିଷ୍ୟ ନାହିଁ ତାହାଙ୍କର । ୯ ।

ରହାସ ଦାସଙ୍କ ସୂତ ବସ୍ତୁ ବନ୍ଧ ଦୁଇ ।
ମୁଦ୍ରା ଶିଷ୍ୟ ତାହାଙ୍କର ଗମିବେ ଯେ ମହୀ ।
ଆମ୍ଭେମାନେ ସର୍ବେ ଦେଶ ଦେଶକେ ଭ୍ରମିବୁ ।
ଲୋକମାନେ ପଚାରିଲେ ବୁଝାଇଣ ଥିବୁ ॥

ଶ୍ରୀଗୁରୁ ପରମ ଗୁରୁ ଶୁଣିଣ ଆନନ୍ଦ ।
ଭଲ ପଚାରିଲ ତୁମ୍ଭେ ବସ୍ତୁଗଣ ଭେଦ ॥
ରାମ ଭଟ୍ଟ ମୁକୁନ୍ଦ ଅନନ୍ତ ତୁମ୍ଭେ ଚାରି ।
ବୃନ୍ଦାବନେ ଥିଲ ତୁମ୍ଭେ ସଖା ଅଙ୍ଗ ଧରି ॥
ଲୋକତ ଭାବରେ ଗୁରୁଶିଷ୍ୟ ହୋଇଅଛ ।
ସାନ ଶାଖା ମୁକୁନ୍ଦ ବଡ ଶାଖା ଯେ ରାମ ବସ୍ତୁ । ୧୦ ।

ଭଟ୍ଟ ସାନ ଶାଖା ବଡ଼ ଶାଖା ମୁଁ ଅଚ୍ୟୁତ ।
ଆମ୍ଭଙ୍କୁ ଲୋକତାରଣେ କୃଷ୍ଣ କଲେ ଜାତ ॥

ଖୋଲ କରତାଳ ଦେଇ ଥୋକେ ତୁମ୍ଭେ ଭାର ।
ଖୋଲ କରତାଳ ଗୁରୁ ଅଟ ତୁମ୍ଭେ ବାର ॥
ତୁମ୍ଭଙ୍କୁ ନ ପୂଜି ଯେହୁ ସନ୍ଧ୍ୟାରେ ପଶିବ ।
ସେ ଅଣଗୁରୁଆ ସେ ସନ୍ଧ୍ୟାସେ ନ ମିଶିବ ॥
ନୀଳାଚଳ ଶ୍ରୀ ଚୈତନ୍ୟମଣ୍ଡଳୀରୁ ଆସି ।
ତୁମ୍ଭ ପିତାମାନେ ଖୋଲ ଶିଖାଇଲେ ପୁଣି ॥
ରାମଚନ୍ଦ୍ର, ମହୋତ୍ସବେ ତୁମ୍ଭଙ୍କୁ ବରିଲୁ ।
ତୁମ୍ଭ ରାସଲୀଳା ଦେଖି ହରଷ ହୋଇଲୁ । ୧୫ ।

ଥୋକେ ଗୋପାଳଙ୍କୁ ତୁମ୍ଭେ ସନ୍ଧ୍ୟାସେ ମିଶାଅ ।
କେହୁ ଗୋପାଳଙ୍କୁ ତୁମ୍ଭେ ତତ୍ତ୍ୱରେ ବୁଝାଅ ॥
ସନ୍ତମାନ କେହୁ ଗୋପାଳଙ୍କୁ ଶିଖାଇବ ।
ମନ୍ତ୍ରମାନ କେହୁ ଗୋପାଳଙ୍କୁ ବୁଝାଇବ ॥
ଜ୍ୟୋତିବ୍ରହ୍ମ ମୂରତି କେବଣ ଗୋପାଳ ।
ସ୍ୱସ୍ୱାମୂର୍ତ୍ତି ଦର୍ଶନ କରିବ ହୃଦମୂଳ ॥
ଅବାଙ୍ମୂରତି କେ ବା କରିବ ଦର୍ଶନ ।
ସମାଧି କଷ୍ଟଲେ କେହୁ କରିବେକ ପୁଣ ॥
ଅଷ୍ଟ ଯେ ପ୍ରହର ରସଗୁଣ ଯେତେ ହୋଏ ।
ସନ୍ଧ୍ୟାସର ବିଧି ଯେତେ ପ୍ରମାଣରେ କହେ ॥ ୨୦ ॥

ଛନ୍ଦ ଧୂପ ପାଞ୍ଚ ଅବକାଶ ସେହୁ ସନ୍ଧ୍ୟାସେ ।
ଏହା ଜାଣିଲେକ ଯୋଗୀ ସନ୍ଧ୍ୟାସରେ ମିଶେ ॥
ସନ୍ଧ୍ୟାଠାରୁ ପ୍ରଭାତ ଯାଏ ତାଙ୍କ ଲୀଳାମାନ ।
ପ୍ରାତଠାରୁ ସନ୍ଧ୍ୟା ଯାଏ କରି ଉପାସନ ॥
ଏହୁ ଲୀଳାମାନଙ୍କରେ ଗାଉଥିବ ଗୀତ ।
ତେଣୁ କରି ରସ ଗୁଣ ବୁଝିବ ତୁମ୍ଭେ ତ ॥
ପରମ ଗୁରୁ ବଚନ ଶୁଣି ବାର ଦାସ ।
ମୁକୁନ୍ଦ ଅନନ୍ତ ସେ ଯେ ଶୁଣିଣ ହରଷ ॥

ଅକାର ଆକାର ଅଂଶ ସୃଜିଲେ ଏ ଦେହ ।
ଦୃଷ୍ଟି ଅଂଶ ମୂର୍ତ୍ତି ନାନା ମୂର୍ତ୍ତିରୂପ କ୍ରିୟା ॥ ୨୯ ॥
ଅକାର ଉକାର ଯେ ଏକାର ବେଢ଼ି ପୁଣ ।
ଇକାର ଉପରେ ଯାଇ ଅଂକାର ଧାରଣ ॥
ଅଂକାର ବେଢ଼ିଲା ପୁଣ ମଣ୍ଡଳ ଦଶଏ ।
ମଣ୍ଡଳୁ ବାହାର ଗାର ହୋଇଲା ଗୋଟିଏ ॥
ସେ ଗାରରୁ ଅନ୍ତ ଗାର ହୋଇଲା ଭିଆଣ ।
ତିନି ଗାର ତହିଁ ତଳେ ହୋଇଛି ପ୍ରମାଣ ॥
ତିନିରୁ ଏକ ଆଣିଣ ଅନେକ ଭିଆଇ ।
ଷୋଳ ପୁର କରି ସ୍ଥାନ କରାଇଲା ସେହି ॥
ଷୋଳ ଅଂଶ ପୁଣି ରଖି ତହିଁ ସେ ଚଳିଲେ ।
ଛଅ ପୁର କରିଣ ସେ ପୁର କରାଇଲେ ॥ ୩୦ ॥
ଦଶ ପୁର କରି ତହିଁ ରହିଲେକ ଥାନ ।
ଛଅ କଳା ରଖି ତହିଁ ଚଳିଲେ ଯତନ ॥
ଦଶ ସ୍ୱରୂପ ରଖିଣ କଲେକ ଗମନ ।
ଦ୍ୱାଦଶ ପୁର ରଚିଲେ ହୃଦୟ ଭୁବନ ॥
ଦ୍ୱାଦଶ କଳା ରଖିଣ ଗମନ ପୁରୁଷ ।
ଅଷ୍ଟରନ୍ଧ୍ରେ ପ୍ରମାଣ କଲେକ ଏକ ଦେଶ ॥
ନାସ୍ତିକ ନ ଥିଲା ପ୍ରାଏ ବସ ଜନ ଅଟଇ ।
ବିବେକୀ ଜନ ନ ଥିଲେ ପଶୁରୂପ ଥାଇ ॥
ତାଙ୍କ ମୁଖ ବାକ୍ୟ ଶୁଣି ମନ ଯାଏ ମିଶି ।
ଏ ତତ୍ତ୍ୱମାନଙ୍କେ ଆତ୍ମେ ପଶୁରୂପୀ ପଶି । ୩୧ ।
ଏଣୁକରି ତୁମ୍ଭେମାନେ ଏ ଅଷ୍ଟ ଯେ ଗୁଣ ।
ଶିଷ୍ୟରେ ବୁଝାଇ କହ ମୁକୁନ୍ଦ ଯେ ପୁଣ ॥
ଅନନ୍ତ ବସୁ ଗୋବିନ୍ଦ ମଥୁରା ସୁଦାମ ।
ଗୁପତ ଅଟଇ ଏହୁ ଗୁରୁଙ୍କର ଧର୍ମ ॥

କଳିକାଳ ଘୋର ହେବ ବୈଷ୍ଣବେ ମମତା ।
ଧନ ବଡ଼ପଣରେ ଯେ ଦେଖିଥିବେ ଚିନ୍ତା ॥
ରାଜସ କର୍ମ କରିବେ ସାତ୍ତ୍ୱିକ ଛାଡ଼ିବେ ।
ପଦାତି ତୁରଙ୍ଗ ଚଢ଼ି ଦେଶରେ ବୁଲିବେ ॥
ନର ନାରୀସ୍କନ୍ଧ ରେ ଚଢ଼ିବେ ବୈଷ୍ଣବ ।
ନଷ୍ଟ ହେବ ତାଙ୍କର ଯେତେକ ପୁଣ୍ୟ ଥିବ ॥ ୪୦ ॥

ହସ୍ତୀରେ ଚଢ଼ିଲେ ହରିନାମର ଭଜନ ।
ନଷ୍ଟ ହେବ ପୁଣ୍ୟ ଧର୍ମ ନ ମିଳିବ ଅନ୍ନ ॥
କମଳ କଠାଉ ଛଇ ତତ୍ତ୍ୱର ବାଖାଣି ।
ପାଦରେ ଗମିଲେ ଦାସ ଭଗତରେ ଗଣି ॥
ପଦାତି ତୁରଙ୍ଗେ ଗମେ ଯେବଣ ଯେ ଦାସ ।
ବୈଷ୍ଣବ ନୁହନ୍ତି ସେ ଯେ ରାଜସ ରାକ୍ଷସ ॥
ଦେହ କ୍ଷୀଣ ନ କଲେ ତ ନୁହଇ ସାଧନ ।
ସଂଯମ ଭଜନେ ସେ ନୋହନ୍ତି ଖରଜନ ॥
ସଂଯମ ଭଜନ ଯେହୁ ଦାସ ନ କରଇ ।
ଧାନର ମଧ୍ୟରେ ଯେହ୍ନେ ଅଗାଡ଼ି ଅଛଇ । ୪୫ ।

ସଂଯମ ଜାଣିଲୁ ଦାସ ପାଚିଲାର ଫଳ ।
ଲେଉଟି ଭକତ ବୀଜ ନୁଅଇ କଶ୍ମଳ ॥
ଗୀତା ଭାଗବତେ ଏହି କଥାଟି ପ୍ରମାଣ ।
ଗାଇ ବୁଝି ନ ପାରନ୍ତି ନ ରମନ୍ତି ଜନ ॥
ଗୁରୁ ମୁଖେ ବୁଝିଥିଲେ ଦିଶେ ଝଳହଳ ।
ଉଜ୍ଜ୍ୱଳ ଦର୍ପଣେ ଯେସନ୍ତେ ମୁଖର ସୁଢ଼ାଳ ॥

ଆଉ ଯିଠି ଦର୍ପଣରେ ମୁଖ ନ ଦିଶଇ ।
ଉତ୍ତମ ମଧ୍ୟମ ସେ ଯେ ଦର୍ପଣର ଦୁଇ ॥
ଉତ୍ତମ ଗୁରୁ ପାଇଲେ ସଂସାର ସଙ୍କେଣ ।
ଦ୍ୱିତୀୟ ଖଣ୍ଡେ ଏ ଗୁରୁଭକ୍ତିରେ ଲେଖନ ॥ ୫୦ ॥

ଗୁପ୍ତଗୀତା ଏ ଧାନ ଅଚ୍ୟୁତ ବଚନ ।
ଗୁପ୍ତ କରି ଶୁଣୁଥିବ ତୁମ୍ଭେ ବାର ଜଣ ॥
ଏ ଗ୍ରନ୍ଥକୁ ଅନ୍ୟ ଶିଷ୍ୟେ ନ ଦେବରେ ବାରୁ ।
ରାମଚନ୍ଦ୍ର ବିଶ୍ୱାସରେ କହିଦେଲୁଁ ସବୁ । ୫୬ ।

ଇତି ଶ୍ରୀ ଗୁରୁଭକ୍ତ ଗୀତାୟାଂ ଦ୍ୱିତୀୟ ଖଣ୍ଡେ ଗୁରୁଶିଷ୍ୟ-
ବୋଧନେ ଅନାଦି ମନ୍ତ୍ର ତନ୍ତ୍ରଭେଦ ନିର୍ଣ୍ଣୟ ବର୍ଣ୍ଣନେ
ନାମ ଦ୍ୱାଦଶ ପଟଳଃ ।



# ତ୍ରୟୋଦଶ ପଟଳ

ମୁକୁନ୍ଦ ଅନନ୍ତ ସେ ମଧୁସ୍ତ୍ର ସୁଦାମରେ ।
କହୁବା ଗୁପତ କଥା ଶୁଣସି ଶ୍ରୁତରେ ॥
କ୍ଷଣେ ଦଣ୍ଡ ନମିଷେଣ ବସିଣ ସାଧିବ ।
ଶୁଣ ପ୍ରହରକଠାରୁ ନିଦ୍ରାକୁ ତେଜିବ ॥

ଆହାର ଭୋଜନ ପୁଣ କରିବ ଅଳପ ।
ନାଭିଠାରୁ ମେରୁଦଣ୍ଡ କରିବ ସଳଖ ॥

ତେବେ ସେ ଜାଣିବା ଭକ୍ତ ସାଧନା ସ୍ୱେ ଦେହ ।
ତ୍ରିଭଙ୍ଗୀ ମୂରତି ସାଧନାରେ ହେଉଥିଅ ॥
ଶ୍ୱେତ ରଙ୍ଗ ଶ୍ୟାମଳ ହରିତ କଳା ପଞ୍ଚ ।
ନୀଳ ଜ୍ୟୋତି ମଧ୍ୟେ ବାଳ ମୁକୁନ୍ଦ ରୂପଞ୍ଚ ॥ ୯ ॥

ବାଳର ସହସ୍ର ଭାଗ ଏକ ଭାଗ ପ୍ରାପ୍ୟେ ।
ଏମନ୍ତ ମୂରତି ଚିହ୍ନି କରିବ କେ ଥପ୍ୟେ ॥
ତାହାଙ୍କ ଜ୍ୟୋତିରୂପକୁ ସାଧୁଜନ ଧ୍ୟାନ୍ତି ।
ଏ ଭବସାଗରୁ ତରିଯାନ୍ତି ତାଙ୍କ ବୁଦ୍ଧି ॥

ଏଣୁକରି ଜୀବନରେ ଲକ୍ଷ୍ୟେ ଚିହ୍ନି ଥିବ ।
ଏମନ୍ତ ଗୁରୁଚରଣେ ଶିରକୁ ଟେକିବ ॥

ବ୍ରହ୍ମା ଶିବ ଯୋଗିମାନେ କୋଟି ଯୁଗ ଧ୍ୟାନ୍ତି ।
ଖୋଜି ନିଶି ଦିବସରେ ନ ପାଇଲେ ସେହୁ ॥

କୋଟିକେ ଗୋଟିଏ ଭକ୍ତ ଚିହ୍ନନ୍ତି ସେ ପୁଣ ।
ବାସନା ଛିଡ଼ି ହୋଇଲେ ପରନ୍ତ ଶରଣ ॥ ୧୦ ॥

---

୧-୨ ସାବଧାନ ଧୀରେ—କ, ଖ

ସାଧନା ଯୋଗରେ କରିଥିବ ପଣମାଣ ।
ପରମ ଭୋଳା ଯେ ସ୍ଥାନେ ଲଭିବ ମରଣ ॥
ତେବେ ସେ ରାଧାପଦାସ ଜାଣିବ ପ୍ରତ୍ୟକ୍ଷ ।
ଶୂନ୍ୟ ରାଧାସେ ମିଳଲେ ତେବେ ହେବ ମୋକ୍ଷ ॥
ବୃନ୍ଦାବନ ରାଧାସ ମୁକୁନ୍ଦ ପିତା ଶୁଣ ।
ଅନନ୍ତ ମଥୁରା ପିତା ରାଜ ସେବାପ୍ରେଣ ॥
ସୁଦାମ ଗୋବିନ୍ଦ ବସ୍ତ୍ର ପିତାମାନେ ବଡ଼ ।
ରାଜ୍ୟରେ ପ୍ରତ ପ ଦେବ ସେବାରେ ନଚୂଡ଼ ॥
ଚୈତନ୍ୟ ପ୍ରଭୁଙ୍କଠାରୁ ସଜାଙ୍କ ଜଣାଇ ।
ଖୋଲ କରତାଳ ଦେଲେ ପୁଷ୍ପସ୍ନେହ ବନ୍ଧ ॥ ୧୬ ॥

ତହୁଁ ଆସି ତୁମ୍ଭେମାନେ ରାସବାଧ୍ୟ କଲ ।
ଶୁଣିବାକୁ ଅଣିଲୁ ଯେ ନବ ଏ କୁଣ୍ଡଳ ॥
ପଞ୍ଚସଖା ପ୍ରେକ ସଖା ନ ଜାଣୁ ଏ ରସ ।
ଶୂନ୍ୟ ରାଧାସରେ ଆମ୍ଭ ବଳଲା ମୁହାଁସ ॥
ବୃନ୍ଦାବସ ଶୂନ୍ୟରସ ଦୁଇଙ୍କୁ ସାଧିଲ ।
ଗୋପାଳ ସୁତ ଯେ ତୁମ୍ଭେ କଥ ବୁଝାଇଲ ॥
ଗୋପାଳ କୁଳରେ ଖୋଲ କର୍ତ୍ତାଳ ଯେ ଧରେ ॥
ତୁମ୍ଭଙ୍କୁ ଦକ୍ଷିଣା ଦେବେ ବରଷ ଦନରେ ॥
ତୁମ୍ଭଙ୍କୁ ନ ପୁଜ ଯେହୁ ରାଧାସ କରିବ ।
ଅନ୍ୟ ଯେ ରାଧାସଦାସ ତାହାକୁ ଗଣିବ ॥ ୨୦ ॥

ନିତ୍ୟ ରାଧାସେ ତୁମ୍ଭଙ୍କୁ ହୋଇଛୁ ପ୍ରାପତ ।
ନିତ୍ୟସ୍ଥଳେ ତୁମ୍ଭେମାନେ ହେଇଅଛ ଜାତ ॥
ଏମନ୍ତେ ରେ ଗୋପାଳ ଯେ କୁଳକୁ ଉଦ୍ଧାର
ତୁମ୍ଭ ଶିଷ୍ୟଗଣ ମିଶି ହୋଇବ ନିସ୍ତାର ॥

---

୧୪-୨ ଆଙ୍କରେ—କ,ଖ ।

ତନ ମୂର୍ତ୍ତି ନୀଳାଚଳେ ଜଗନ୍ନାଥ ଦାସ ।
ବୃନ୍ଦାବନ କୁଞ୍ଜବନେ ନନ୍ଦ ଗୋପଶିଷ୍ୟ ॥
ଶୂନ୍ୟରୂପ ଜ୍ୟୋତମୂର୍ତ୍ତି ବିକୁଣ୍ଠର ପରେ ।
ଏହୁ ତନ ମୂର୍ତ୍ତି ପୁଣ ବଖାଣ ସଂସାରେ ॥
ତୁମ୍ଭ ଅଂଶେ ଥୋକେ ଜନ ବାଦ ଯେ ଧରିବେ ।
ଧୂମ ମନ୍ଦିରରେ ଥୋକେ ଭ୍ରମର ମାତିବେ ॥ ୨୫ ॥

ଗଞ୍ଜା ଅପୁ ଖାଇବେ ଯେ ମିଛରେ ମମତ ।
ଦୁଖ କଷ୍ଟ ନିରନ୍ତରେ ହେଉଥିବେ ନାତ ॥
ପଞ୍ଚସଖା ଅନ୍ତେ ଥୋକେ ହେବେ ସନ୍ଥ ପୁଣ
ଥୋକେ ପୁଜ ହେଉଛିବେ ନସ ଦୁଷ୍ଟ ମୂଢ ଜନ ॥

ଗୋପାଳ କୁଳକୁ ପୁଣ ଦରଧ କରିବେ ।
ଘୃତ ଦୁଗ୍ଧ ଭୋଗକରି ଦେହ ବଢ଼ାଇବେ ॥
ଦ୍ୱନ୍ଦ ଛନ୍ଦ କରି ଧନ ଦେବେ କୁଟୁମ୍ବରେ ।
ସାଧୁସେବା ନ କରି ଦରିଦ୍ର ହେବେ ନରେ ॥
ମୁଁ ନାରି ପଣରେ ବନ୍ତ ହେଉଇବେ ଗୋସାଇଁ ।
କଉଡ଼ି ଲୋଭରେ ସେ ଯେ ବୁଲୁଥିବେ ମସ୍ତି ॥ ୩୦ ॥

ଅଚ୍ୟୁତ ଅଂଶରେ ଆମ୍ଭ ତନ ପୀଢ଼ିଠାରେ ।
କନ୍ଥ ଚୂଡ଼ାମଣି ଥିବ ଗନ୍ଧର୍ବ ହୃଦରେ ॥
ବେନ ଅଂଶେ ଅଂଶେକ ଯେ ଗୁପତ ହୋଇବ ।
ଅଂଶକର ଅଂଶମାନେ ଗୁଡ଼ିଏ ବଢ଼ିବ ॥
ରାମଚନ୍ଦ୍ର ଠାରେ ଥିବ କନ୍ଥ ସୁଚରିତ୍ର ।
ଅବିବେକ ପୁଅ ଯେ ଜନ୍ମିବେ ସେ ବୀର ॥
ଘୃତ ଦୁଗ୍ଧ ଖାଇ ବଡ଼ପଣେ ଥିବେ ମାତି ।
ତୁରଙ୍ଗଯାନ ଗମନେ ବଳିଥିବ ମତି ॥

ଦ୍ୱନ୍ଦବାଦ କରିଣ ଅଚ୍ୟୁତ ଗଡ଼ଠାରେ ।
କଉଡ଼ି ସ୍ୱାଦରେ ସେ ଯେ ବୁଲିବେ ସଂସାରେ ॥ ୩୫ ॥

ବନ୍ଧା ଛନ୍ଦା ମାରଧର କରିବେ ସଂହାର ।
ନିଜ ଗଣମାନଙ୍କୁ ସେ କରିଦେବେ ଦୂର ॥
ମିଛୁଆ ମାହାନ୍ତ ମୁଣ୍ଡ ଗହଡ଼ ସଙ୍ଗର ।
ବୁଲୁଥିବେ ଦେଶେ ଦେଶେ ଯେହ୍ନେ ଖଣ୍ଡସ୍ୱେର ॥
ଗୁରୁଶିଷ୍ୟମାନଙ୍କ ନୋହିବ ଚେତେବେଳେ ।
କିଛୁଦିନ ଦେଶରେ ଭ୍ରମିବେ ଜନ ସ୍ଥଳେ ॥
ବହୁତ ଅଂଶର ଆମ୍ବ ବାଛିବ ଯେ ଗୋଳ ।
ଏକ ବୀର୍ଯ୍ୟ ଥିଲେ ସିନା ନୁହନ୍ତା ଯେ ଖଳ ॥
ବହୁ ବୀର୍ଯ୍ୟ ସଂସାରେ ବହୁତ ଗୋଳ ହୋଇ ।
ବହୁ ଭାଗ୍ୟେ ଏକବୀର୍ଯ୍ୟ ବଂଶ ଚିର ହୋଇ ॥ ୬୦ ॥

ଶ୍ରୀକୃଷ୍ଣ କରୁଣା ଯେଣୁ ହୋଇଲା ମୋହର ।
ବ୍ରଜ ଗଦାଧର ପୁତ୍ର ହେବ ଏକ ମୋର ॥
ମୁକୁନ୍ଦ ତାହାର ବୀର୍ଯ୍ୟେ ଜନମ ହୋଇବ ।
କିଛୁପାଇଁ ସେଠାବରୁ ବେନି ଅଂଶ ହେବ ॥

ସେଠ ବରୁ ବହୁ ପୁତ୍ର ପାପ ଗରାସିବ ।
ଦାସୀଅଙ୍ଗ ଛୁଇଁବାରୁ ବୀର୍ଯ୍ୟହୀନ ହେବ ॥
କଳିକାଳେ ଧାରଣ ନୋହିବ ସନ୍ଥ ପୁତ୍ର ।
ନିରନ୍ତରେ ସୁଖଭୋଗେ ମାତିଥିବ ଚିତ୍ତ ॥
ରାମଚନ୍ଦ୍ର ବୀର୍ଯ୍ୟେ ପୁତ୍ର ଗୋଲକୁଣ୍ଡା ହୋଇ ।
ଖଳବଳ ଲଗିଥିବ ଚଞ୍ଚଳ ନୁହଇ । ୬୫ ।

ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଗୋପାଳ ଯେ ପାଞ୍ଚ ।
ପଞ୍ଚ ଜାତି ସେ ପୁଣ ସଂସାରେ ହେବ ଶ୍ରେଷ୍ଠ ॥

ଏଣୁ କର ଦାସୀ ଅଙ୍ଗ ଶୂଦ୍ର ନ ଛୁଇଁବ ।
ଛୁଇଁଲେଣ ବଡ଼ ଦୋଷ କୁଳ ନଷ୍ଟ ହେବ ॥
ରାଜେନ୍ଦ୍ର ଯୋଗେନ୍ଦ୍ର ବିଧି ଏମନ୍ତ ଅଛଇ ।
ମନ୍ତ୍ରଅଙ୍ଗ ରାଜେନ୍ଦ୍ର ଯୋଗେନ୍ଦ୍ର ଯତ୍ର କନ୍ଧୁ ॥

ଶତମୁଖ ଦକ୍ଷିଣ ରାଜାର ହୋଏ ପ୍ରଜା ।
ଷଷ୍ଠ ଅଙ୍ଗ ଧଇଲେ ଯୋଗୀନ୍ଦ୍ର ପାଏ ପୂଜା ॥
ସର୍ବଜୀବେ ହରମଧ୍ୟ ଦେଖଇ ଯେମନ୍ତ ।
ତେବେ ସିନା ସଂସାରରେ ବୋଲନ୍ତି ମହନ୍ତ । ୬୦ ।

ନରଅଂଶ କେବେ ଯେଣୁ ନ ମଣନ୍ତି ସନ୍ଥ ।
ଉତ୍ତମ ଆରମ୍ଭ ଶେଷେ ନ ବଳଇ ଚନ୍ଥ ॥
ନରକଣ୍ଠେ ଚଢ଼ିଲେ ଯେ ରାମ ନାମ ଜପ ।
ନିଷ୍ଫଳ ହୁଅଇ ତାଙ୍କ ଭଜନ ପ୍ରତାପ ॥
ଗଜ କନ୍ଧେ ଚଢ଼ିଲେ ଯେ କୃଷ୍ଣର ଭଜନ ।
ବୀଜ ନାଶ ହୁଅଇ ଚଢ଼ିଲେ ଢନଯାନ ॥
ଏଣୁ କରି ଘୋଡ଼ା ହାତୀ ନରେ ନ ଚଢ଼ିବ ।
ରାଜସ ତାମସ ଭକ୍ତି ତାହାକୁ ଲେଖିବ ।
ମଲେଣି ସେ ନରଲୋକେ ଆତଯାତ ହୋଇ ।
ରାଜ୍ୟତ ସଧ୍ୱତ ଘରେ ଜନମ ସେ ପାଇ । ୬୫ ।

ବୈଷ୍ଣବ ଚରଣ ରେଣୁ ଧାମ କ୍ଷେତ୍ରମାନ ।
ଏମନଙ୍କେ ସେହୁ ପୁଣ ନ ହୁଅନ୍ତି ଜନମ ॥
ଗୋଲୋକ ଆଶ୍ରୁଧ ଘେନି ଭିକ୍ଷା ମାଗୁଥିବ ।
କୀର୍ତ୍ତନ ମୁଖରେ କରି ସଂସାର ତରିବ ॥
ନାସିକା ପଥରେ ଗମି ନାମରେ ମଜ୍ଜିବ ।
ଅଦୃଷ୍ଟିରେ ନାମ ଧ୍ୟାୟି ଭ୍ରୂମଧ୍ୟେ ଜାଗିବ ॥
ନାମରେ ଯେ ବର୍ଣ୍ଣି ଚିନ୍ତାସ୍ପର୍ଶୀର ପରସ୍ତେ ।
ଭାଗବତ ଗୀତାରେ ଏ ପ୍ରମାଣଟି ହୋଏ ॥
ହୁତାଶନ ପ୍ରାପ୍ତେ ନୈଷ୍ଠ ଅଟଇ ଯେ ପୁଣ ।
ଶ୍ରୀଏକାଦଶେଣ ଏହୁ ଅଟଇ ପ୍ରମାଣ । ୭୦ ।

ଜନମଧ୍ୟେ ଜ୍ୟୋତରେ ଜନ୍ମିଲେ ନାମ ଜାଣି ।
ବେଦର ମଧ୍ୟରେ ସାର ଅଟେ ଏହୁ ପୁଣି ॥

ଆପଶୀର ମୁଣ୍ଡ ବ୍ରହ୍ମ ଭ୍ରୁବ ଭ୍ରୁରୁ ସ୍ଥାନ ।
ଗାୟତ୍ରୀ ମନ୍ତରେ ବପ୍ରେ କରନ୍ତ ସେ ଧ୍ୟାନ ॥
ଏଣୁ ତୁମ୍ଭେ ନାମ ଯେ କୀର୍ତ୍ତନ କରୁଥିବ ।
ଆପଣେ ତରବ ପରେ ନସ୍ତାର କରବ ।
ଅଚ୍ୟୁତ ଚଟେର ମୋର ଅଷ୍ଟ ବାର ଦାସ ।
ଦ୍ୱିତୀୟ ଖଣ୍ଡ ଏ ଗୁରୁଭକ୍ତ ଗୀତା ରସ । ୭୪ ।

ଇତ ଶ୍ରୀଗୁରୁଭକ୍ତି ଗୀତୀୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ-
ବୋଧନେ ତନ୍ତ୍ରଭେଦ କଥନେ ବଂଶାନୁଚରତେ ନାମ
ତ୍ରୟୋଦଶ ପଟଳଃ ।



# ଚତୁର୍ଦ୍ଦଶ ପଟଳ

ବିଷ୍ଣୁଦେବ ସଖାଗଣ ଯେନଣ ସଙ୍ଗେଣ ।
ନମଗ୍ନେ ଶୁଣ ଅଛନ୍ତି ହରଷ ମନେଣ ॥
କହ ବିଷ୍ଣୁଦାସଗଣ ମନେ କା ସଂଶୟେ ।
ପୁଚ୍ଛିଲେ ପାଇବ କହୁ ଗୁରୁଙ୍କ ହୃଦୟେ ॥

ଗୁରୁଦେବ ବଚନେ ଉଠିଣ ଶିରେ କର ।
ବେତ ଯେ ମୁରାରି ପୁଚ୍ଛେ ଗୁରୁଙ୍କ ଛାମୁର ॥
ବସ୍ତ୍ର ଯେ ମୁରାରି ପୁଣ ସଙ୍ଗତେ ଅଛନ୍ତି ।
ଭାଠି ଯେ ଗୋପାଳ ତାଙ୍କ ସନ୍ନିଧରେ ଥାନ୍ତି ॥
ମାଧବ ଯେ ଦାସ ପୁଣ ଅଛନ୍ତି ସଙ୍ଗେଣ ।
ଯୁଧେଷ୍ଠି ଦାସ ଯେ ଶିରେ କର ଦେଇ ପୁଣ । ୯ ।

ନରସିଂହ ଗୋପାଳ ଯେ ହରଷ ଭାବରେ ।
ଗୋକୁଳଚନ୍ଦ୍ର ଅଛନ୍ତି ତାହାଙ୍କ ପାଖରେ ॥
ବଇଂଶୀ ଦାସ ଯେ ପୁଣ କେ ମନ ବଚନ ।
ହରିହର ବେନ ଦାସ ହରିଷ ଭାବେଣ ॥

ଭଣଆ ହରିଦାସ ଯେ କଥାର ବିସ୍ତର ।
ସାହାଣି ଗୋପାଳ ଦାସ ଅଛନ୍ତି ସଙ୍ଗର ॥
ପ୍ରେମା ଯେ ଗୋପାଳ ଦାସ ପ୍ରେମଭାବେ ରହେ ।
ଦ୍ୱାଦଶ ଗୋପାଳ ବିଷ୍ଣୁ ଦାସ ସଖା ବନ୍ଦେ ॥
ମନ୍ତ୍ର ଭେଦ କେମନ୍ତ ଅଟଇ ଗୁରୁ ବାଣୀ ।
ଭେଦିଲେ ଶିଷ୍ୟର ଅଙ୍ଗେ ଜ୍ଞାନ ଦୋଷ ପୁଣି । ୧୦ ।

ଶୁଣ ବିଷ୍ଣୁ ଦାସଗଣେ ମନ୍ତ୍ରଙ୍କର ମୂଳ ।
ପଞ୍ଚମନ୍ତ୍ରେ ସର୍ବମନ୍ତ୍ର ହୁଅନ୍ତି ଯେ ମୂଳ ॥

ଷଡକ୍ଷର ଏକାକ୍ଷର ଶ୍ୟାମ ପଞ୍ଚାକ୍ଷର ।
ତାରକ ହରେ ଯେ ରାମ ପଦ୍ମମନ୍ତ୍ର ସାର ॥
ଅନନ୍ତ ଯୁଗର ମନ୍ତ୍ର ଷଣ ଯେ ଅକ୍ଷର ।
ସତ୍ୟଯୁଗେ ଏକାକ୍ଷର ମନ୍ତ୍ର ଅଟେ ସାର ॥
ତ୍ରେତୟା ଯୁଗରେ ପୁଣ ଅଟଇ ତାରକ ।
ଦ୍ୱାପର ଯୁଗରେ ଶ୍ୟାମପଞ୍ଚାକ୍ଷର ଲେଖ ॥
କଳିଯୁଗେ ହରିନାମ ଷୋଳ ଯେ ଅଟଇ ।
ସର୍ବମନ୍ତ୍ରମାନ ସେହୁ ଗର୍ଭରେ ଧରଇ ॥ ୧୯ ॥

ଷୋଳନାମୁଁ ଛନ୍ଦନାମ କଳିରେ ପ୍ରଚୁର ।
ଚୈତନ୍ୟ ଠାକୁରେ ତାହା କଲେ ଯେ ବାହାର ॥

ହରେ କୃଷ୍ଣ ରାମ ନାମ ସଂସାରେ କହିଲେ ।
ତେର ନାମ ଗୁପତେଣ ଲୁଚାଇ ରଖିଲେ ॥
ଶ୍ୟାମ ପଞ୍ଚାକ୍ଷରୁ କଲେ ଅଠର ଅକ୍ଷର ।
ବ୍ରହ୍ମା ପୁଣ ନିଗମରୁ କଲେକ ବାହାର ॥

ତାରକ ମନ୍ତ୍ରରୁ କଲେ ଗାୟତ୍ରୀ ଯେ ଆଠ ।
ଏକାକ୍ଷରୁ ନାରାୟଣ ମନ୍ତ୍ର କଲେ ପାଠ ॥
ଷଣ ଯେ ଅକ୍ଷର ପୁଣ ମନ୍ତ୍ରଙ୍କର ମୂଳ ।
ତାରକ ଯେ ଏକାକ୍ଷର ଶ୍ୟାମ ଅଟେ ଡାଳ ॥ ୨୦ ॥

ଆଉର ଯେତେକ ମନ୍ତ୍ର ଡାଳ ଶାଖା ଜାଣ ।
ସବୁ ମୂଳମନ୍ତ୍ର ଅକ୍ଷର ପ୍ରମାଣ ॥
ହରେ ରାମ ମନ୍ତ୍ରରାଜ ଚୈତନ୍ୟ ଶ୍ରୀଗୁରୁ ।
ନୀଳାଚଳ ସାର୍ବଭୌମ ବୁଝିଲେ ସେଠାରୁ ॥

କୃଷ୍ଣମନ୍ତ୍ର ଦ୍ୱାପରେ ବୁଝିଲେ ସଖାଗଣ ।
କାମଗାୟତ୍ରୀ ଜପିଲେ ଯେତେ ଭକ୍ତଗଣ ॥
ସତ୍ୟଯୁଗେ ପଞ୍ଚାକ୍ଷର କପିଳ ମହନ୍ତ ।
ବୁଝିଲେ ସଙ୍ଗତେ ଥିଲେ ଯେତେ ମୁନି ସନ୍ତ ॥

ଯୁଗଳ ମନ୍ତ୍ର ଯେ ପୁଣ କଳିର ଭଗତ ।
ଚଇତନରୂପେ ଏକ ବୁଝାଇ ଆପେତ ॥ ୨୫ ॥

ଠାକୁରାଣୀ ମନ୍ତ୍ର ଯେ ଦ୍ୱାପର ଯୁଗେ ଜପ ।
ବ୍ରହ୍ମଗୋପୀଙ୍କ ଲିଖି ଯେ ସେବାରେ ମହାଭୋଗ୍ୟ ॥
ଶୂନ୍ୟ ଯେ ଭଜନ ମନ୍ତ୍ର ସତ୍ୟଯୁଗେ ଯାର ।
ସଦଗୁରୁ ଜାଣନ୍ତି ଯେ ମନ୍ତ୍ରର ବିସ୍ତର ॥
ଏମନ୍ତେଣ ଚଉରାଶି ମନ୍ତ୍ର ପୁଣ ଅଛି ।
ଚଉରାଶି ଯନ୍ତ୍ରକୁ ଯେ ଲକ୍ଷଣ ରହିଛି ॥
ରାମ ଭ୍ରାଅ ଶିଷ୍ୟମାନେ ରହାସ ପ୍ରଧାନ ।
ଅକିଞ୍ଚନ ଦଶ ତ ଧଇଲେ ହେତୁମନ ॥
କୃଷ୍ଣଦାସଗଣେ ତୁମ୍ଭେ ହେତୁ ମନେ ଧର ।
ପାଷାଣ୍ଡ ଗୋପାଳକୁଳେ ତୁମ୍ଭ ଅଧିକାର । ୩୦ ॥

କୃଷ୍ଣଗଣେ ନୁହନ୍ତି ତ ରହାସର ଦାସ ।
ଦୀକ୍ଷା ଶିକ୍ଷା କର ତୁମ୍ଭେ ଜଗାଇବ ଦେଶ ॥
ହନୁମାନ ପବନ ମଧ୍ୟ ମଥୁରା ଯେ ଦାସ ।
ନପୁଂସକ ଶରୀର ଯେ ଯଡ ତାଙ୍କ ଅଂଶ ॥

ମୁକୁନ୍ଦ ଅନନ୍ତ ବସ୍ତ୍ର ସୁଦାମ ଗୋବିନ୍ଦ
ବାଳକ ଯେ ବୃନ୍ଦାବନ ଆବର ଆନନ୍ଦ ॥
ଏମାନେ ଯେ ସପ୍ତ ଅଙ୍ଗ ଅଟନ୍ତି ଧାରଣ ।
ସପ୍ତ ଯଡ ଅଙ୍ଗ ଧରି କଲେ ଦ୍ୱୀପ ପୁଣ ॥
ଧର୍ମଦାସ ବନ୍ଧ ବୈଷ୍ଣବ ଉଜଗଣମାନେ ।
ସେବା କରିଥିବ ତୁମ୍ଭେ ରାମଦାସ ପଣେ ॥ ୩୫ ॥

କଳିଯୁଗେ ସଙ୍କୀର୍ତ୍ତନ ଭୁବନ ମଙ୍ଗଳ ।
ଦ୍ୱାପର ଯୁଗେ ରାସ ସ ହରେ ଅମଙ୍ଗଳ ॥
ତ୍ରେତୟା ଯୁଗରେ ତାଳ ମର୍ଦ୍ଦଳ ସୁଲଭ ।
ସତ୍ୟଯୁଗେ ନାରଦ ଯେ ବୀଣାରେ ପ୍ରଣବ ॥

ଖେମଟା ତାଳ ବଜାଇ ଢନ୍ଦପୁରେ ଥାନ୍ତି ।
ଶ୍ରୀକୃଷ୍ଣଗୁଣ ଗାଇଣ ଆନନ୍ଦେ ନାଚନ୍ତି ।।
ଏ ଲୀଳାମାନଙ୍କୁ ଏଥୁ ହୋଇଲେ ସ୍ୱଜନ ।
ଧନ ଜନ ପଣ ତେଜ ସ୍ୱହାସରେ ମନ ।।
ତୁମ୍ଭେ ବୈଷ୍ଣବ ଦାସ ଭକ୍ତଗଣମାନ ଯେତେ ।
ଆବୋରିଲ ଧନଜନ ପଣର ସହିତେ ।। ୪୦ ।।

ମାୟାମୋହ ସଂସାରକୁ ତେଜି ନ ପାରିଲ ।
ଏଣୁକରି ସଂସାରରେ ବନ୍ଧନ ହୋଇଲ ।।
ଏବେ ସେ ନିସ୍ତାର ପଥ କହୁଛି ତୁମ୍ଭରେ ।
ବରଷ ଦିନରେ କରି ମହୋତ୍ସବ ଥରେ ।।

ମାତାର ସମ୍ବନ୍ଧ ପିତା ସମ୍ବନ୍ଧ ନ ଥିବ ।
ଗଗଚନ୍ଦ୍ରା ଗୁହଚନ୍ଦ୍ର କଲ୍ପଣା ନ ଥିବ ।।
ବାଡ଼ି ବୃତ୍ତି ଧନ ଆଣେ ନ କରିବ ମେଳେ ।
ନିସ୍ତାର ନୁହଇ ଏଥୁ କଳ୍ପନା ଯେ ଥିଲେ ।।
ଯେବେ ଭିକ୍ଷା କରି ତହୁଁ ମୁଠାଏ ରଖିବ ।
ବରଷ ଦିନରେ ତାହା କୃଷ୍ଣେ ସମର୍ପିବ ।। ୪୫ ।

ଶିଷ୍ୟଠାରୁ ଦିନେ ଦିନେ ରଖି କିଛୁ କିଛୁ ।
ମହୋତ୍ସବ କୃଷ୍ଣଙ୍କବେ·ସାଧୁଗଣ ପୂଛି ।।
ଖୋଳ କରତାଳ ଦାସ ଏହାଙ୍କୁ ବଣିବ ।
ଫୁଲ ପାନ ଚନ୍ଦନ ବସନମାନ ଦେବ ।।
ଏ ପଞ୍ଚସ୍ତବରେ ପୂଜି ସ୍ୱହାସର ଜନ ।
ମିଷ୍ଟାନ୍ନଭାବେ ମିଳିବ ଯେତେ ପୁଣ ଅନ୍ନ ।।

ପିଷ୍ଟ ଫଳମୂଳଜଳ ପାନ ଯେ ମିଳିବ ।
ଅର୍ଦ୍ଧ ଗୃହେ ବସାଇଣ ଏହାଙ୍କୁ ପୂଜିବ ।।
ପିତାପୂର୍ବଶ୍ରାଦ୍ଧ ପ୍ରାୟ ଶରଧା ବଳାଇ ।
ତେବେ ସେ ଗୃହ ସଫଳ ସରୁପତ ହୋଇ ।। ୫୦ ।

କେବା ତିନିଗ୍ରହ କଲେ ଦିନେ ଅଧିବାସ ।
ଦିନେକ ଯାଗ କରିବ ଦିନେ ଅଧିବାସ ॥
ଏମନ୍ତେ ତିନି ଦିନ କେହ୍ନୁ ପୂର୍ଣ କରେ ।
ନ ଲାଗିବ କଳିତାପ ହୃଦରେ ଗୁମ୍ଭର ॥

କେବା ପାଞ୍ଚଗ୍ରହ କଲେ ଦିନେ ଅଧିବାସ ।
ତିନିଗ୍ରହ ଯେ ଗୃହବାସ ଦିନେ ଅଧିବାସ ॥
ପଞ୍ଚ ଯେ ପାତକମାନ ଖଣ୍ଡନ ହୁଅଇ ।
ବ୍ରହ୍ମହତ୍ୟା ଗୁରୁହତ୍ୟା ପାତକ ଖଣ୍ଡଇ ॥
ମାଳ୍ୟ ଯେ ହରଣ ଭଗ୍ନୀହରଣର ଦୋଷ ।
ମଦିରା ଖଣ୍ଡନ ପାପ ହୁଅଇ ବିନାଶ ॥ ୫୫ ॥

କେବା ସପ୍ତଗ୍ରହ କଲେ ଦିନେ ଅଧିବାସ ।
ପଞ୍ଚଗ୍ରହ ମହୋତ୍ସବ ଦିନେ ଅଧିବାସ ॥
ସନ୍ତାପ ତାପ ଯେ ତାଙ୍କ ଦେହେ ନ ଲାଗଇ ।
ଭଗତ ଦର୍ଶନେ ତାର ଶୋକ ଦେହୁଁ ଯାଇ ।

ଅନ୍ନତାପ ପୁତ୍ରତାପ ବିପତ୍ତାପ ମାନ ।
ରୋଗତାପ ଶତ୍ରୁ ତାପ ବିନାଶି ବନ୍ଧନ ॥
ନାନାକଷ୍ଟ ଶାନ୍ତହୁଏ ଭଗତ ଦର୍ଶନେ ।
ସପ୍ତ ଗ୍ରହ ସ୍ୱପ୍ନେ ଯେ ହୃଦ୍ଧ୍ୟାନ କରନ୍ତେ ॥

କେବା ନବଗ୍ରହ କରେ ଦିନେ ଅଧିବାସ ।
ସପ୍ତଦିନ ମହୋତ୍ସବ ଦିନେ ଅଧିବାସ ॥ ୬୦ ॥

ନବଧା ଭଗତିଫଳ ପ୍ରାପତ ହୁଅଇ ।
ସେ ଜନ ଦର୍ଶନ କଲେ ପାତକ ଦୂଷଇ ॥
ଦର୍ଶନ ଭଗତି ପାଏ ଶ୍ରବଣ ଭଗତି ।
ବନ୍ଦନ ଭଗତି ପାଏ ଚରଣ ଭଗତି ॥
ସ୍ମରଣ ଭଗତିମାନ ଭଗତ ଲଭଇ ।
କୀର୍ତ୍ତନ ଭଗତି ତାଙ୍କୁ ପ୍ରାପତ ହୁଅଇ ॥

ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ।
ଏ ଦ୍ୱାଦଶ ମହୋତ୍ସବ ଯେ ଜନ କରଇ ॥
ଧର୍ମ ତିନିଦିନ ଫଳ ଅର୍ଥ ତିନି ଦିନ ।
କାମ ତିନି ଦିନ ଫଳ ମୋକ୍ଷ ତିନି ଦିନ ॥ ୬୯ ॥

ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ।
ବୈଷ୍ଣବ ଚରଣ ପୂଜା ଅବଶେଷ ଖାଇ ॥
ଷୋଳଦିନ କରେ ଯେହୁ ମହୋତ୍ସବ ବିଧି ।
ସର୍ବଫଳ ପରାପତ ହୋଏ ତାଙ୍କ ସିଦ୍ଧି ॥
ପଞ୍ଚରାତ୍ର ତିନରାତ୍ର ସପ୍ତରାତ୍ର ଅବା ।
ଦ୍ୱାଦଶ ଦିନରେ ପୂଜା ଷୋଳରେ ଲଭିବା ॥

ଆଷାଢ଼ ମାସରେ ଯେହୁ ଶୁକ୍ଳ ପ୍ରତିପ ।
ଅଧିବାସ କରିବ ସୁହିଁଣ ମୋର ରୂପ ॥
ଚଉଦିନ କରେ ଯେ ମହୋତ୍ସବ ମୋର ।
ପ୍ରତିପଦ ଦିନ ଅଧିବାସର ବିଚାର ॥ ୭୦ ॥

ଦ୍ୱାଦଶ ଦିନର ଫଳ ଶୁଣିସୁ ବାହୁଡ଼ା ।
ଅସ୍ତନ ଦୂରିଲେ ହୋଏ ଶସ୍ତନ ବାହୁଡ଼ା ॥
ଚତୁର୍ଦ୍ଦଶୀ ଫଳ ଲଭେ ଏକାଦଶୀ ରାତେ ।
ବାହୁଡ଼ା ଦୀପ ଦେଖନ୍ତି ଯେହୁ ଜନ ନେତେ ॥

ଏମନ୍ତେଣ ମହୋତ୍ସବ କରି ରାସମାନ ।
ବାରଜନ ପୂଜା ଜନ୍ମେ କରିବ ଭୋଜନ ॥
ଶୁଣ ବୈଷ୍ଣବଦାସଗଣ ବନ୍ଧଦାସ ଗଣ ।
ଧର୍ମଦାସଗଣ ଶୁଣ ମହୋତ୍ସବ ଗୁଣ ॥
ବନ୍ଧଗଣ ଶ୍ୟାମଦାସ ହରିଦାସ କହେ ।
ଗୋକୁଳ ଦାସର ନରସିଂହର ବିନସ୍ତେ ॥ ୭୧ ॥

ବିନୋଦ ଦାସ ଯେ ଲକ୍ଷ୍ମୀ ଶ୍ରୀଧର ଗୋପାଳ ।
ଗୋପୀ ଦାସ ବଂଶୀଦାସ ମୋହନ ଶଙ୍କର ॥

ଏହୁ ବାର ଗୋପାଳର ମନର ସଂଶୟେ ।
ମାସ ଦିନ ମହୋତ୍ସବ ଉତ୍ସବ ଯୋଗାଏ ॥
ଶୁଣ ବଳ ଦାସ ଗଣ ଭଲ ପଚ୍ଛରିଲ ।
ଲକ୍ଷ୍ମୀଆ ଶ୍ରୀଧର ଦାସ ମନେ ହେତୁ କଲ ॥
ଉତ୍କଳ ସନ୍ଧରେ ଯେବେ ଶିଷ୍ୟ ରଖେ ମନ ।
ଭକ୍ତଶିଷ୍ୟ ବୋଲି ସେ ବୋଲିବା ବିଦ୍ୟମାନ ॥
ଶୁଣ ବଳଦାସ ଧର୍ମ୍ମଦାସ ରାଜ ଗୁଣ ।
ଭାଦ୍ରବ ମାସରେ ଜନ୍ମ ଅଷ୍ଟମୀ ସେ ଦିନ ॥ ୮୦ ॥
ଜଳପାନ ବିଧି ଦେବ ସଜାଡ଼ି କରଣ ।
ରାଜ ଉଜାଗରେ ଦୀପ ଜାଳିବ ସେ ପୁଣ ॥
ଦିବସେ ଭୋଜନ ଦେବ ନବମୀ ତିଥିରେ ।
ଅର୍ଦ୍ଧ ରାତ୍ରେ ଉତ୍ସବ କରିବ ମାନସରେ ॥
ଆଶ୍ୱିନ ମାସରେ ଦିନ କୁଆଁର ପୂର୍ଣ୍ଣିମୀ ।
ଅର୍ଦ୍ଧ ରାତ୍ରେ ମହୋତ୍ସବ ନିୟମରେ ପୁଣି ॥
ରାତରେ ଭୋଜନ ଦେଇ ପ୍ରଭାତେ ମେଲାଣି ।
ହେତୁକର ଅଚ୍ୟୁତ ବଚନ ପରମାଣି ॥
ଦ୍ୱିତୀୟଖଣ୍ଡ ଯେ ଗୁରୁଭକ୍ତ ଗୁପ୍ତଗୀତା ।
* ଅଚ୍ୟୁତ ଯେ ପ୍ରଣିପତେ ହୋଇ ବ୍ରହ୍ମଚେତା ॥ ୮୧ ॥
ଚତୁର୍ଦ୍ଦଶ ଛାନ୍ଦ ଏହୁ ମନ୍ତ୍ରଭେଦ ଜାଣି ।
ମହୋତ୍ସବମାନ ଏହୁ ଅଧ୍ୟାୟରେ ବଖାଣି ॥ ୮୨ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ
ବୋଧନେ ମନ୍ତ୍ରାଦି ମହୋତ୍ସବ ବିଧିକଥନେ
ନାମ ଚତୁର୍ଦ୍ଦଶପଟଳ ।

---

* ପାଠାନ୍ତର—ଅଚ୍ୟୁତର ଗଣ ଯେତେ ସେମାନଙ୍କ ହିତା ।

## ପଞ୍ଚଦଶ ପଟଳ

ବେତ ଯେ ମୁରାରି ଅଦ୍ଭ ଆନନ୍ଦ କହନ୍ତି ।
ବନସ୍ତ ଭାବରେ ଗୁରୁ କରୁଅଛୁ ସ୍ତୁତି ॥
ଆବର ଯେତେକ ବ୍ରତ ଅଛୁ ସେ ଯେ ପୁଣ ।
ପରମ ଗୁରୁଙ୍କ ମୁଖୁଁ ଶୁଣିବୁ ପ୍ରମାଣ ॥
ଶୁଣ ଆହେ। ନାଭପୁତ୍ର ବେତ ହୋ ମୁରାରି ॥
କାର୍ତ୍ତିକ ମାସରେ ଯେ ସପତ ଯାତ୍ରା କରି ॥
ପଞ୍ଚଯାତ୍ରା କରିବ ଯେ ଫଗୁଣର ଦୋଳ ।
ରାମ ଯେ ନବମୀ କର ଚଇତର କାଳ ॥
ଦ୍ୱାଦଶ ଦିନ କରିବ ବୈଶାଖ ମାସରେ ।
ଶୁକଳପକ୍ଷ ହୋଇବ ଚନ୍ଦ୍ରର ବାସରେ ॥ ୫ ॥
ମଧ୍ୟଯାତ୍ରେ କରିବ ଯେ ମାଘପୁଷ୍ପ ମାସେ ।
ମଧ୍ୟଯାତ୍ରେ କରିବ ଯେ ଶ୍ରାବଣର ଶେଷେ ॥
ଦଶମୀ କାର୍ତ୍ତିକମାସ କର ଅଧିବାସ ।
ପଞ୍ଚଦିନ ମହୋତ୍ସବ ଦିନେ ଅଧିବାସ ॥
ଚତୁର୍ମାସ ଫଳ ଲଭେ ଏକାଦଶୀ ଦିନ ।
ପଞ୍ଚମାସ ଫଳ ଲଭେ ପୂର୍ଣ୍ଣିମୀ ଦିନେଣ ॥
ସପ୍ତାବ୍ଦ ପାପ ଖଣ୍ଡଇ ସପ୍ତମ ଦିନରେ ।
ସପ୍ତଦିନ ମହୋତ୍ସବ କରେ ଯେଉଁ ନରେ ॥
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ବର୍ଣ୍ଣଜାତି ।
ପତିତ ଚଣ୍ଡାଳ ଯେ ଭକ୍ଷକ ନାନାଜାତି ॥ ୧୩ ॥

---

୮—୧ ଚତୁର୍ବିଧ ଫଳ ଲଭେ—ଗ ।
୮—୨—ପଞ୍ଚବିଧ—ଗ । ପଞ୍ଚକର—ଘ ।

ଅଷ୍ଟାଦଶ ପାତକ ଯେ ଯେତେ ଭେକ ବନ୍ଧୁ ।
ବୈଷ୍ଣବ ପ୍ରାପ୍ତ ପୂଜିବ ଯେ ଅନ୍ନପାଣି ଦେଇ ॥
ଛୁଦ୍ର କରି ପୂଜିଲେ ଯେ ସାତକୋଟି ପାପ ।
ମନ୍ତ୍ରୋଷ୍ରଦ କରଣିରେ ଅଙ୍ଗ ହୋଏ ଗୋପ୍ୟ ॥
ସର୍ବଘଟେ ଜୀବରୂପେ ନାମ ନାରାୟଣ ।
ଆତ୍ମା ଚିହ୍ନି ଯେଉଁମାନେ କରେ ଅନ୍ନଦାନ ॥
ଅନ୍ନର କଣିକା ଯେତେ ହୁଏ ସମ ଜାଣ ।
ବହୁତ ଅନ୍ନ ଯେ ବୋଲି ନ କର ପୂଜନ ॥
ତୁଳସୀର ପତର ଯେ ଅଟେ ପୁଣ ସତ ।
ସାନ ବଡ଼ ନ କରିବ ଯେତେ ଭେକଧାରୀ ॥ ୧୫ ॥

ବୈଷ୍ଣବ ମୂର୍ତ୍ତି ସାନ ବଡ଼ ନୁହଇ ଯେମନ୍ତ ।
ହରି ଆଗ୍ରେ କଲ୍ପ ଲେକ ପୂଜିବ ତେମନ୍ତ ॥
ଅଛୁଦ୍ରେ ପୂଜିଲେ ପାଏ ପରମ ସୁଗଢ ।
ଛୁଦ୍ର କରି ଭଜିଲେ ଯେ ପାପରେ ସଙ୍ଗଢ ॥
ଧର୍ମ୍ମଗଣ ବୈଷ୍ଣବଗଣ ବନ୍ଦଗଣ ଯେତେ ।
ରାମ ଭକ୍ତ ଦ୍ୱାଦଶଙ୍କୁ ପୂଜିବ ଯେମନ୍ତେ ॥
ରାମର ଅଟନ୍ତି ଆଠ ଭକ୍ତର ଯେ ସାର ।
ଚବିଶ ଜଣରେ ଏହୁ ଅଟେ ଅଧିକାରୀ ॥
ବ୍ରଜକୁଳେ ଅଧିକାରୀ ରାମଚନ୍ଦ୍ର ଦାସ ।
ସକଳ ଶିଷ୍ୟରେ ଯେହ୍ନୁ ଆଗ ଉପଦେଶ ॥ ୨୦ ॥

ରାମର ଯେ ଶିଷ୍ୟ ଏଣୁ ବ୍ରଜକୁଳେ ସାର ।
ଭୁବନ ମଙ୍ଗଳ ଧ୍ୱଜ ଅଛି ତାଙ୍କ କର ॥
କରଯୋଡ଼ି ମୁକୁନ୍ଦ ଅନନ୍ତ ମଧୁ କନ୍ଧ ।
ଉତ୍ଥ ନ ପବନ ଯେ ଗୋବିନ୍ଦ ବାଳକନ୍ଧ ।

---

୧୪—୨ ବହୁତ ଅନନ = ସନ୍ତୁ ପୋଥିରେ । ୧୫—୧ ସମପର = ସ ।

ବସ୍ତ୍ର ଯେ ଯାଦବ ବୃନ୍ଦାବନ ଯେ ଆନନ୍ଦ ।
ମଥୁରା ମିଶିଣ ବାରଗୋଟି ଗୋପବୃନ୍ଦ ॥
ଗୁରୁଶିଷ୍ୟମାନଙ୍କର ଲଗିଥିବ କଳି ।
ସ୍ତ୍ରୀମାନେ ନ ମିଳିବେ ଅନ୍ୟେ ଅନ୍ୟେ ମିଳି ॥
ପିତାଙ୍କୁ ପୁତ୍ର ନ ଯେନ୍ନ କରୁଥିବେ ଘର ।
ଶଶୁର ଘରରେ ଯାଇ ହେବେ ପରସ୍ତ୍ରୀ ॥ ୨୯ ॥
ରଜାମାନେ ପାଷଣ୍ଡଙ୍କେ ସମ୍ଭ୍ରମ ନ ଦେବେ ।
ଖଟୁଆ ମିଛୁଆ ଲୋକେ ଶ୍ରୀରପା ପାଇବେ ॥
ସତ୍ୟବନ୍ତ ଲୋକଙ୍କୁ ଯେ ସଭାରେ ନ ଲେଖି ।
ଦୁଧ ନ ଦେଇଣ ଗୋରୁମାନେ ହେବେ ଦୁଃଖୀ ॥
ଅନ୍ତରତ କାଳରେ କି ସୁଖ ଭୋଗଥିବ ।
ଏଥିର ସନ୍ଦେଶ ଫେଡ଼ି କହ ଗୁରୁଦେବ ।
ଶୁଣ ବାରଟିଆ ଦାସ ଅଚ୍ୟୁତ ବଚନ ।
ଭବିଷ୍ୟ ଆଗତ କଥା ହେତୁ ମନେ ଘେନ ॥
ଧନ ପୀଡ଼ା ତୁମ୍ଭର ଯେ ସୁଖ ଭୋଗେ ଯିବ ।
ରାଜଦଣ୍ଡ ତାପମାନ ବହୁତ ଲଗିବ ॥ ୩୦ ॥
ବୃନ୍ଦାବନ ବାସୁଦେବ ବୈଷ୍ଣବଦାସ ଧନ ।
ମୁଁ ଅକ୍ଷରେ ତାପ ତାଙ୍କୁ ଲଗିବ ଯେ ପୁଣି ॥
ବାଳନର ଦାସ ଅଂଶେ ଗୋବିନ୍ଦ ଯେ ପୁତ୍ର ।
ବ ଅକ୍ଷରେ କଷ୍ଟ ତାଙ୍କୁ ତାପ ଲଗିବତ ॥
ଅନନ୍ତ ଅଂଶରେ ଜାତ ଭିଖାରି ଅଛଇ ।
ଶ୍ରୀ ଅକ୍ଷରେ ବଳପୁଟେ ଦାସ ତାପ ପାଇ ॥
ମୁକୁନ୍ଦ ଅଂଶରେ ଜାତ ହେବ ଭାଗୀରଥି
କଣ୍ଟି ନେଲେଣ ନିରଞ୍ଜନ ଲେଖିଥିବ ପୋଥି ॥
ତଦଅଂଶେ ବ ଅକ୍ଷର କର୍ମ ତାପ ଭବିଷ୍ୟ ।
ଘୋର କଳିତାପ ପୀଡ଼ା ଲଗିବ ସମସ୍ତେ ॥ ୩୧ ॥

ଜଳଠାରେ ଶାସ୍ତ୍ର ଗ୍ରନ୍ଥ ରହିବ ଯେ ପୁଣ ।
ଗୁପତେ ରହିବ ଯାହିଁ ପାପଦ୍ୱୀପେ ପୁଣ ॥
କଳିକାଳ ଭକ୍ତମାନେ ସେଠାରେ ଗୁପତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେଠାରେ ଯେ ସ୍ଥିତ ॥
ଶେଷେଁମାନ ଦେଖୁଥିବେ ଜଳରେ ଗୁପତ ।
ସେହୀସ୍ଥାନେ ଭକ୍ତେଛନ୍ତି ପାପଦ୍ୱୀପେ ଜାତ ॥

ଚତୁର୍ଥ ପୀଢ଼ିକୁ ଛାପ ତାହାକୁ ପଡ଼ିବ ।
ମୁକୁନ୍ଦର ସଙ୍ଗ ପୁଣ ଜନଙ୍କି ଦେଖିବ ॥
ପବନ ହନୁମାନ ତୃତୀୟ ବଇରାଗ ହୁଇ ।
ଏଥିରେ କ ଛାପ ପୁଣ ଅଂଶ ଯହିଁ ନାହିଁ ॥ ୪୦ ॥

ମଧୁଦାସ ବୈରାଗ୍ୟ ତ ଏଥି ନାହିଁ ଅଂଶ ।
ବୃନ୍ଦାବନ ଦାସର ଦୁହିତା କୁଳେ ଅଂଶ ॥
ମଥୁରା ଦାସର ଜନ ପୁଣ ତ୍ରାଥି ସୁତ ।
ମଥୁରା ଅର୍ଜ୍ଜୁନ ନାମ ଗୋପାଳ ବିଦିତ ॥

ଏ ଜନ ପୀଢ଼ିରେ ସେହୁ ନ ଅକ୍ଷରେ ଛାପ ।
ଭବିଷ୍ୟର କଥା ଏହୁ ଅଟଇଟି ଗୋପ୍ୟ ॥
ସୁଦାମ ଅଂଶରେ ଜାତ ଚନ୍ଦନ ମୋହନ ।
ବଂଶୀଧର ଅଂଶେ ଗ୍ର ଅକ୍ଷରେ ସେହୁ ପୁଣ ॥

ବସ୍ତ୍ର ଅଂଶେ ବାସୁଦେବ ବନମାଳୀ ଜାତ ।
ଭଗତର ଖିଲକାଳ କଳି ଯେ ପୀଡ଼ିତ ॥
ମାଧବ ଯେ ହଳଧର ଅପରାଜ ସୁତେ ।
ହି ଅକ୍ଷରେ ଛାପ ପୁଣ ଲଗିବ ସେ ସୁତେ ॥

ଗୋବିନ୍ଦ ଦାସର ଅଂଶେ ମାଧବ ଯେ ହୋଏ ।
ବ-କ୍ଷରେ ଛାପ ଲଗିବ ସେ ଗୋପର ପୋଏ ॥

---

୪୩—୧ :—ଅ ଅକ୍ଷରେ—ଗା, ଅଣକ୍ଷରେ—ଭ

ଆନନ୍ଦ ଅଂଶରେ ଜାତ ଭଗବାନ ସୁତ ।
କୃପାସିନ୍ଧୁ ସୁତେ ତାପ ଲଗିବ ପୀଡ଼ିତ ॥
ଜଳୁନ୍ଧନ ତୁମ୍ଭେମାନେ ସ୍ୱସଲ୍ଲୀଳା କର ।
ମର୍ତ୍ତ୍ୟସ୍ଥଳେ ତୁମ୍ଭର ଯେ ରହିବ ଶରୀର ॥
ମହାନଦୀ କୂଳେ ସ୍ଥାନ ବାଙ୍କେଣି କୁଦେଣ ।
ଜଙ୍ଘର ବକ୍ଷେବେ ମୃତ୍ୟୁ ମୁକୁନ୍ଦ ଯେ ସ୍ଥାନ ॥ ୫୦ ॥
ଚନ୍ଦ୍ରସ୍ୱର ତଟରେ ଯେ ଜଙ୍ଘନ୍ତେ ବକ୍ଷରେ ।
ବାଲେଶ୍ୱର ନଗରେ ମୃତ୍ୟୁ ଅନନ୍ତ ସେଠାରେ ॥
ଜଙ୍ଘର ବକ୍ଷରେ କଧ ଗଙ୍ଗାତଟେ ସ୍ଥାନ ।
ଶୁଙ୍ଗୁଡ଼ା ଗ୍ରାମରେ ଯେ ଯାଦବର ମରଣ ॥
ପୀତାମ୍ବର ପୁରେ ଖଣ୍ଡି ବକ୍ଷେ ଢେଙ୍କା ଗ୍ରାମ ।
ମରଣ ଲଭିବ ତୁମ୍ଭେ ଆନନ୍ଦ ସୁଦାମ ॥
ବଛ ଯେ ଗୋବିନ୍ଦ ଦୁଇ କୋଠଦେଶ ସ୍ଥଳେ ।
ସ୍ୱର୍ଗଙ୍ଗା ତଟରେ ଥିବ ତୁମ୍ଭେ ଦୁଇ ଜଣେ ॥
କ୍ଷେତ୍ରବର ନୀଳାଚଳେ ବାଙ୍କି ମଠକୋଣେ ।
ପବନ ମଥୁରା ତୁମ୍ଭେ ରହ ଦୁଇଜଣେ । ୫୫ ।
ଭଟୁଆ ଗ୍ରାମରେ ଚନ୍ଦଦ୍ୱାର ଯେ ସେ ସ୍ଥାନ ।
ସେ ସ୍ଥାନେ ସମାଧି ହୁଅ ତୁମ୍ଭେ ଯେ ଛତ୍ରାନ ॥
ମଧ୍ୟ ବୃନ୍ଦାବନ ରହ ଜଙ୍ଘର ବକ୍ଷରେ ।
ସ୍ୱପ ଚଉଡ଼ିଆ ବୋଲିଣ ଗ୍ରାମ ତାକୁ ବୋଲେ ॥
ଥାନେ ଥାନେ ତୁମ୍ଭର ଯେ ରହୁ ଅଂଶ ମାନ ।
ଗୋପାଳେ ଶିଖିବେ ଖୋଲ କରତାଳ ପୁଣ ॥
ଶୁଣ ଖୋଲ ଦାସ ତୁମ୍ଭେ ବାରଗୋଟି ଜନ ।
ସ୍ୱର ପୀଢ଼ି ଯାଏ ଏଥି ଶୁଭ ଯୋଗମାନ ॥

---

୫୨—୨ : —ଶଙ୍ଖଗଡ଼ା—କ, ଗ ।

ଦାଗ୍ର ଅବୋଶଲେ ଅଂଶ ହୁଅଇ ଯେ ପୂର୍ଣ୍ଣ ।
ପୂର୍ଣ୍ଣ ହେଲେ ସଂସାରରେ ହୋଇବ ଧାରଣ । ୬୦ ।

ମୂଳ ଯେ ଗୋପାଳ ତୁମ୍ଭ ଅଂଶ ସଙ୍ଗେ ମିଳି ।
ଖୋଲ ସଙ୍ଗେ ମିଶି ବଜାଇବ କରତାଳି ॥
ଖୋଲ କରତାଳ ସଙ୍ଗେ ପାଅ ତୁମ୍ଭେ ପୂଜା ।
ତୁମ୍ଭଙ୍କୁ ପୂଜୁଥିବେ ଦଶପାଳ ରାଜା ॥

ଫୁଲ ପାନ ଚନ୍ଦନ ଚମ୍ପକ ଭଲ ଆନ ।
ଦବ୍ୟଭୋଗ ଭୁଞ୍ଜିବ ହେ ତୁମ୍ଭେ ବାରଜଣ ॥
ଆମ୍ଭ ଅଂଶ ଭୃଅ ଅଂଶ ରାମ ଅଂଶ ମାନେ ।
ଧର୍ମ୍ମ ଅଂଶ ଯାଦବ ଅଂଶ ଆତ୍ମା ତୁମ୍ଭେ ଜନେ ॥
କୃଷ୍ଣ ଅଂଶ ନାହାନ୍ତି ତ ବଇରାଗ ଜନେ ।
ଏଥୁଁ ପାଞ୍ଚ ଅଂଶ ଛନ୍ତି ଆମ୍ଭ ଅଂଶମାନେ । ୬୫ ।

ଜପ ଭକ୍ଷାକୁ ସେ ଯେଣୁ କରଥିବ ମନ ।
ମୂଢ଼ ଯେ ଗହଡ଼ ଘରେ ବୁଲୁଥିବେ ପୁଣ ॥
ନେତ ଗୋପାଳର ଘରେ ବୁଲୁଥିବେ ଜଡ଼ ।
ବସ୍ତ୍ରେ ପଣେ ଘେନଣ ଆରମ୍ଭେ ବଡ ଜାଡ଼ ॥
ଦମ୍ଭ ମୁରୁଛରେ ସେହୁ ହକ୍କ ଲ ନୋହିବେ ।
ଭଜନ ବଜନ ଶାସ୍ତ୍ରମାନ ନ ଖୋଜିବେ ॥

ଯନ୍ତ୍ର ମନ୍ତ୍ର ତନ୍ତ୍ର ତ୍ରାସ୍ଥା କୋଡ଼ ନ ସାଧିବେ ।
ଅବାଡ଼ ସମାଧି ଭେଦ ଯେଣୁ ସେ ଗ୍ରହିବେ ॥
ଗୋ ବ୍ରହ୍ମହତ୍ୟା ଯେ ମାତୃହରଣ ବଶୂଳ ।
ସୁରାପାନ ଜୀବହତ୍ୟା ବିଶ୍ୱାସ ମାତଳ । ୭୦ ।

ଏତେକର ପାପମୂଳେ ଅଠର ଯେ ପାପ ।
ଅଠର ମୂଳରେ ଅଷ୍ଟାଦଶ ଗୋଟି ଗୋପ୍ୟ ॥
ଅଷ୍ଟାଦଶ ଗୋଟିକ ଅଠର ବୀଜ ମନ୍ତ୍ର ।
ଜପ କଲେ ନାଶଇ ସକଳ ଦେହ ତନ୍ତ୍ର ॥

ଏ ପାପମାନଙ୍କୁ ଛେଦେ ଯେତୁ ମନ୍ତ୍ର ଜପି ।
ମନ୍ତ୍ରକୁ ବୁଝରେ ଯେବେ ଯେତୁ ପାରେ ସ୍ଥାପି ॥
ଅଷ୍ଟାକ୍ଷର ମନ୍ତ୍ରକୁ ହୃଦ—ସମାଧି ଯେ ଲଏ ।
ଏକାକ୍ଷର ମନ୍ତ୍ରକୁ ଯେ ଜ୍ୟୋତିରୂପ ଧ୍ୟାଏ ॥
ତାରକ ମନ୍ତ୍ରକୁ ଅର୍ଦ୍ଧମାତ୍ରା କର ଧ୍ୟାନ ।
ଶ୍ୟାମ ପଞ୍ଚାକ୍ଷରକୁ ଓଁ କାର ଗିରି ସ୍ଥାନ । ୭୯ ।

ହରେ ରାମ ମନ୍ତ୍ରକୁ ଓଁମଠି କର ଲକ୍ଷେ ।
ମନ୍ତ୍ର ମୂର୍ତ୍ତି ପଞ୍ଚ ଦେବ ପୂଜି ସାଧୁ ଧ୍ୟାଏ ॥
ଅଷ୍ଟାକ୍ଷର ଏକାକ୍ଷର ତାରକ ମନ୍ତ୍ରର ।
ଶ୍ୟାମ ପଞ୍ଚାକ୍ଷର ହରେ ରାମ ମନ୍ତ୍ର ସାର ॥

ଏହୁ ପଞ୍ଚ ମନ୍ତ୍ର ପଞ୍ଚ ଯୁଗେ ଅଟେ ସାର ।
ଏହୁ ପଞ୍ଚ ମନ୍ତ୍ର ଧରି ଭବୁ ହେବୁ ପାର ॥
ମୋହ ନାମେ ଯଜ୍ଞକୁଣ୍ଡେ ପାପ କ୍ଷୟକର ।
ରାମଦାସ ଗୋପାଳ ତୁମ୍ଭେ ବାର କାଢ ମୋର ॥
ନାମ ଧୂନ ଶବ୍ଦରେ ସର୍ବ ଦାନ ହର ।
ସୁବର୍ଣ୍ଣ ରଜତ ବସ୍ତ୍ର କହନ୍ତି ଅପାର । ୮୦ ।

ରାମାନନ୍ଦ ମଣ୍ଡଳେ ଦେଲେ ପାପ ନ ଲାଗିବ ।
ପାପକୁ ବିନାଶି ତୁମ୍ଭେ ଭୋଗ କରୁଥିବ ॥

ପଞ୍ଚ ମୂର୍ତ୍ତି ପଞ୍ଚମନ୍ତ୍ର ପଞ୍ଚଶାଖା ପୋଏ ।
ଜପିଲେଣ ପାପମାନ ହୋଇବ ଯେ କ୍ଷଏ ॥

ଏ ଭେଦ ନ ଜାଣି ବିଷ୍ଣୁ ବନ୍ଦାପନା ଶୁଝେ ।
ବିରୋଧ ବୈତାଳମାନ ଖାଆନ୍ତି ଯେ ଲୋଭେ ॥
ଦଣ୍ଡେ ହୁଏ ଯେ ବ୍ୟାଧି ପୀଡ଼ଇ ଶରୀର ।
ନପୁଂସୀ ହୋଇଣ ବଡ଼ମୂନା ଯେତୁ ନର ॥
ରାମଦାସ ଦାସ ହେ ଶୁଣ ମୁକୁନ୍ଦ ଅନନ୍ତ ।
ଅଚ୍ୟୁତ କହିଲେ ଗୁରୁଭକ୍ତିଗୀତା ତନ୍ତ୍ର ॥

ଦ୍ୱିତୀୟଖଣ୍ଡ ଯେ ପଞ୍ଚଦଶ ଗ୍ରନ୍ଦରେଣ ।
ଏହ୍ନା ଯେ କହ୍ନବ ସଦଗୁରୁ ବୋଲି କେହ୍ନେ ॥
ଏ ଭେଦ ନ ଜାଣି ଯେହୁ ଗୁରୁ ବୋଲାବନ୍ତି ।
ମୁଦ୍ରିତ କୁସୁମରେ କି ଭ୍ରମର ପାରନ୍ତି ॥ ୮୨ ॥

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ମନ୍ତ୍ରଭେଦ
କଥନେ ନାମ ପଞ୍ଚଦଶ ପଟଳ ।



## ଷୋଡ଼ଶ ପଟାଳ

କରଯୋଡ଼ି ଜଣାବନ୍ତି ରାମଚନ୍ଦ୍ର ଦାସ ।
ଆମ୍ଭ ପୂର୍ବମାନଙ୍କର କହିଲ ତ ଅଂଶ ॥
ନାଦ ପୁତ୍ର ବାର ଜଣ ପ୍ରମାଣ ଭବିଷ୍ୟେ ।
ପ୍ରସଙ୍ଗେ କହିଲ ଗୁରେ ଆମ୍ଭଙ୍କୁ ହରଷେ ॥

ବିନ୍ଦୁ ପୁତ୍ର ପଞ୍ଚଜନ ହୋଇବ କେସନ ।
ଛତ୍ୟସ୍ଥଳେ କେଉଁ କେଉଁଠାରେ ହେବ ସ୍ଥାନ ।
ଶୁଣ ଅହେ ରାମଚନ୍ଦ୍ର ଅଚ୍ୟୁତ ବଚନ ।
ନେମ୍ବାଳ ଭୁବନେ ଚଣ୍ଡତୋଳାର ଯେ ସ୍ଥାନ ॥
ଲବଣ ତଟରୁ ବେଢ଼ି ବରଗ୍ରାମ ନାମ ।
କାନ୍ୟେଶର ବନ ସେ ନେମ୍ବାଳ ଲଗି ବନ ॥ ୯ ॥

ସେ ବନକୁ ଆଶ୍ରେକର ରାମଚନ୍ଦ୍ର ଦାସ ।
ଦେହକୁ ରଖିବ ତହିଁ ଆମ୍ଭ ବଟ ପାଶ ॥
ପଦ୍ମବନ ନେମ୍ବାଳ ଅମ୍ଭର ସେହୁ ସ୍ଥାନ ।
ଭାରତ ସାର ଶ୍ରୀକୃଷ୍ଣ ସେ ସ୍ଥାନେ ଗମନ ॥
ସେ ଥାନେ ଶ୍ରୀକୃଷ୍ଣ ବସି ନୀଳାଚଳ ଗଲେ ।
ଅଠାଶି ଭୁବନେ ଯାଇ ଅନ୍ତର ହୋଇଲେ ॥

ଏଣୁ କହି ସେ ସ୍ଥାନରେ ଆମ୍ଭର ରହଣୀ ।
ରାମଚନ୍ଦ୍ର ହୃଦତ ଉତ୍ତର ଦଗେ ପୁଣି ॥
ଦକ୍ଷିଣ ଦଗରେ ବୃଦ୍ଧ ଗଙ୍ଗାନଦୀ ସ୍ଥାନ ।
ଖଣ୍ଡି ବସେ ପିତାଇ ପୁର ସେହୁ ଗ୍ରାମ ପୁଣ ॥ ୧୦ ॥

ଅଚ୍ୟୁତର ସୁତ ବେବ ବ୍ରଜ ଗଦାଧର ।
ବାଲ ଯେ ମୁକୁନ୍ଦ ହେବ ଗନ୍ଧର୍ବ ରାମର ॥

କଛ ବନର ଅନ୍ତରେ ଗୋଲକୁଣ୍ଡା ହେବ ।
ବଂଅକ୍ଷରେ ନାମ ହେବ ଗୋଲକୁଣ୍ଡା ସ୍ଥାବ ॥
ଭୃଥବୀର ରହିବ ଖଦିର ବନ ସେହି ।
ଅପୋଡ଼ା ପୃଥିବୀ ତହିଁ ଗୁପତେ ଅଛଇ ॥
ପୂର୍ବଦିଗେ ଚନ୍ଦ୍ରଭାଗା ଅଦକ ଦିଗରେ ।
ସଙ୍ଗରସ ବୋଲି ଗ୍ରାମ ପୁଷ୍କରଣୀ ତୀରେ ।
ସେ ପୋଖରୀ ପୂର୍ବଦିଗେ ଅଛି ଏକ ତୀର୍ଥ ।
ସେ ତୀର୍ଥେ ପଶିଲେ ପାପୀମାନେ ହେ କୃତାର୍ଥ ॥ ୧୯ ॥

ଲୋକନାଥ ଆଶ୍ରେ କରି ନନ୍ଦନ ଯେ ବନ ।
ବଳଦାସ ସେ ସ୍ଥାନରେ ସମାଧି ଯେ ଘେନ ॥
ପଶ୍ଚିମ ଦିଗରେ ନଇରୃତ କୋଣ କହି ।
କୁଣ୍ଡଭଦ୍ରା ନଦୀ ତୀର୍ଥେ ପୁଣ୍ୟ ଅଟେ ସେହି ॥

ସାଇଲେ କଣେଷ ଧରେ ଠାକୁରଦାସ ରହି ।
ଏକାମ୍ର ସନ୍ନିଧରେ ସେ ସ୍ଥାନ ଯେ ଅଟଇ ॥
ସେ ସ୍ଥାନେ ବିନ୍ଦୁସାଗର ତୀର୍ଥରାଜ ସେହି ।
ତାହାଙ୍କ ଦର୍ଶନେ ସର୍ବ ପୁଣ୍ୟମାନ ପାଇ ॥
ବିଷ୍ଣୁଦାସ ବନଖଣ୍ଡି ରହିବ ଯେ ପୁଣି ।
ହେମ ବନ ଆଶ୍ରେ କରି ମନପୁରେ ସ୍ଥାନ ॥ ୨୦ ॥

ମହାନଦୀ ଉତ୍ତରେଣ ନିଗମ ଲୁବନ ।
ଶମ୍ଭୁ ଆଶ୍ରେ କରଣ ସେ ଦେବୀ ନିରବାଣ ॥
ଏହୁ ପଞ୍ଚଶାଖା ମୋର ଅଟେ ନିଜ ଅଂଶ ।
ତାରିବ ଗୋପାଳକୁଳ ଓଡ଼ିଶ ଯେ ଦେଶ ॥
ଭୃଥ ଦାସ କରଯୋଡ଼ି ପଚ୍ଛୁରୁଛି ମୁହିଁ ।
କେଉଁ ଅଂଶେ କେତେ ଦାସ କଳିପୀଡ଼ା ହୋଇ ॥

ରାମଅଂଶେ ତାହାଙ୍କୁ ଦାସ ବୃଥା ଯେ ସାରସ ।
ମିଛରେ ତ କଳିପୀଡ଼ା ଲାଗିବ ତା ଅଂଶ ॥

ଭୃଥ ଅଂଶେ ଅନନ୍ତ ସେ ପୁରୁଷଉତ୍ତମ ।
ଭଗତ ଅଂଶରେ ନୁ ଅକ୍ଷରେ କଲଙ୍କମ ।। ୨୫ ।।

ଧର୍ମ ଅଂଶେ ପୂର୍ଣ୍ଣଅଂଶେ ନବୀନ ଅଚଇ ।
କଳାତପ ସେଠାବରୁ ଘୋଟିବ ସେ ମନ୍ତ୍ର ।।
ବନ୍ଦଅଂଶେ ଭଗବାନ ପବନ ବକ୍ଷରେ ।
ନୁଅକ୍ଷରେ ତାପ ଲାଗିବ ସେଠାରେ ତ ଭଲେ ।।
ଆହେ ନାନ୍ତ ଜନମାନେ ମୁକୁନ୍ଦ ଅନନ୍ତ ।
ଅଚ୍ୟୁତର ସୀଯେ଼ ଭୁଜ ଗଦାଧର ଜାତ ।।
ବାଲ ସେ ମୁକୁନ୍ଦ ଗନ୍ଧର୍ବର ପୁତ୍ର ଜାତ ।
କଛୁ କଛୁ ପୁଣ ଥିବ ସହାର ସଙ୍ଗତ ।।
ରାମଚନ୍ଦ୍ର ବୋଲି ପୁଜେ ହୋଇବାକ ଜାତ ।
କଳତାପ ସେଠାବରୁ ହୋଇବ ବହୁତ ।। ୩୦ ।।

ଭୃଅପୁତ୍ର ନପୁତ୍ରରେ ବଢ଼ିବ ଶୋକାଏ ।
ଅନ୍ନ ନ ମିଳିବାରେ ସେ ଭକ୍ଷଣ କାଏ ।।
ବଇଷ୍ଣବ ଲୋକଭ୍ରଷ୍ଟ ରାଜକର୍ମ କଣ ।
ପାଦରେ ନ ରମିବେ ସେ ଗୁରଙ୍କ ଆଦେଶ ।।

ପାଦାନ୍ତ ଚନ୍ଦ୍ରକ ଚଢ଼ି କୁକ୍କୁର ମାଙ୍କଡ଼ ।
ଦାସୀ ପଣବାସ୍ତି ପୋଷି ହେବେ ନାରଙ୍କର ।।
ବଚନ ନିନ୍ଦୁଡ଼ ଧର୍ମ ନ ରହିବ ଅଂଶେ ।
ପେଟର ନିମନ୍ତେ ସେ ବୁଲିବେ ଦେଶେ ଦେଶେ ।।
ଦେଶକେ ପୁତ୍ର ଗୋଟିଏ ନ ରହିବେ ପୁଣ ।
କଳଲ ହପୁଜୁଥିବ ଆମ୍ଭର ଅଂଶେଣ । ୩୫ ।

କ୍ଷୁଦ୍ର ଦାସ ପରିଏଣ ସଂସାରେ ରହିବେ ।
ଅନ୍ନ ବସ୍ତ୍ର ବିହୁନେ ସେ ଛଟପଟ ହେବେ ।।
ପଞ୍ଚ ଅଂଶ ଅମୃତ ଅଂଶ ବାର ଅଂଶ ମାନ ।
ଉକ୍ତରେ ନବଜାତମ ଘୋଟିବ ବନ୍ଧନ ।।

ସାଇରେ ସାଇରେ ଗୋଳ କରିବେ ସଂସାରେ ।
ଗୁରୁଶିଷ୍ୟ ଭିନ୍ନାଭିନ୍ନ କରିବେ ଅନ୍ତରେ ।।
ଆଗରେଣ ଗୁରୁ ଦେଖି କରିବେଟି ମାନ୍ୟ ।
ପଛରେ ବୋଲିବେ ଗୁରୁ ବଡ଼ କୁଟଜନ ।।
କାକୁଡ଼ିର ପ୍ରାୟେ ଗୁରୁ ଶିଷ୍ୟ ହୋଇଥିବେ ।
ବଚନ ଅନ୍ଧକେ ଗୁରୁ ପଥ ବୁଡ଼ାଇବେ । ୪୦ ।
କରପଦ୍ମ ଯୋଡ଼ି କହେ ଅନନ୍ତ ମୁକୁନ୍ଦ ।
ମୁକୁନ୍ଦ ପାଖଣ୍ଡ ଜୀବ ଏହୁ ବଡ଼ ଦ୍ୱନ୍ଦ ।।
ଶୁଣ ହେ ବିଶ୍ୱାସ ନାଥ ମୁକୁନ୍ଦ ଅନନ୍ତ ।
ଏକ ପୁତ୍ର ଯୋଗୁଁ ଯିବ ବହୁପୁତ୍ର ଜାତ ।।
କଳିର ନବଢ଼ ଘୋର କୃଷ୍ଣରସ ଜାତ ।
ପାପଗ୍ରହ ଘୋଟିବ ଯେ କଳି ହେବ ହତ ।।
ଗୁରୁଘରେ ପାପ ହେଲେ ବଡ଼ମୂନ ହେବ ।
କଳିର ଅନ୍ଧାର ସବୁ ଘରେପ୍ରକାଶିବ ।।
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ପୃଥ୍ୱୀ ଯେବେ ଥାଇ ।
ମହାଘୋର ପାପମାନ ଧ୍ୱଂସକରି ଯାଇ । ୪୫ ।
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ନ ରହିବ ସତ ।
ଏଣୁକରି କଳିଯୁଗ ହୋଇବଟି ହତ ।।
ରାଜାମାନେ ଭଣ୍ଡି ନେବେ ପରଜାର ଧନ ।
ଗୁରୁମାନେ ଶିଷ୍ୟଠାରେ ଲୋଭେ ଦେବେ ମନ ।।
ମନ୍ତ୍ର ଯନ୍ତ୍ର ପଢ଼ିଲେ କରିବେ ଯେ ହିଂସା ।
ପେଟର ନିମନ୍ତେ ବୁଲି ଦେଶେ ଦେଶେ ଆଶା ।।
ରାଜାମାନେ ସତ୍ୟଭାଷାମାନ ନ କହିବେ ।
ପଞ୍ଚା ଦେଇ ପରଜାଙ୍କୁ ଦୁଇଗୁଣ ନେବେ ।।
ମଦିରା ପାନ କରିବେ ବ୍ରାହ୍ମଣ କ୍ଷତ୍ରିୟ ।
ଦେବୀ ପୂଜା ବୋଲିଣ ସେ ମିଳିବେ ଶୂଦ୍ରସ୍ଥ । ୫୦ ।

---

୫୦—୨=ଭକ୍ଷିବେ ଅମିଷ—ଗ ।

ସ୍ୱଇରେ ସ୍ୱଇରେ ଗୋଳ କରିବେ ସଂସାରେ ।
ଗୁରୁଶିଷ୍ୟ ଭିନ୍ନାଭିନ୍ନ କରିବେ ଅନ୍ତରେ ॥
ଆଗରେଣ ଗୁରୁ ଦେଖି କରିବେଟି ମାନ୍ୟ ।
ପଛରେ ବୋଲିବେ ଗୁରୁ ବଡ଼ କୁଜନ ॥
କାଉଡ଼ିର ପ୍ରାପ୍ତେ ଗୁରୁ ଶିଷ୍ୟ ହୋଇଥିବେ ।
ବଚନ ଅନ୍ଧକେ ଗୁରୁ ପଥ ବୁଡ଼ାଇବେ । ୪୦ ।
କରପଦ୍ମ ଯୋଡ଼ି କହେ ଅନନ୍ତ ମୁକୁନ୍ଦ ।
ମୁକୁନ୍ଦ ପାଖଣ୍ଡ ଜୀବ ଏହୁ ବଡ଼ ଦ୍ୱନ୍ଦ ॥
ଶୁଣ ହେ ବିଶ୍ୱାସ ନାଥ ମୁକୁନ୍ଦ ଅନନ୍ତ ।
ଏକ ପୁଣ୍ୟ ଯୋଗୁଁ ସିବ ବନ୍ଧୁପୁଣ୍ୟ ଜାତ ॥
କଳିର ଜବଜ ଘୋର କୃଷ୍ଣରସ ଜାତ ।
ପାପଗ୍ରହ ଘୋଟିବ ଯେ କଳି ହେବ ହତ ॥
ଗୁରୁପଦେ ପାପ ହେଲେ ବଡ଼ମ୍ୟନ ହେବ ।
କଳିର ଅନ୍ଧାର ସବୁ ଘରେପ୍ରକାଶିବ ॥
ରାଜେନ୍ଦ୍ର ଯେତେନ୍ଦ୍ର ଘରେ ପୃଷ୍ଠେ ଯେବେ ଥାଇ ।
ମହାଘୋର ପାପମାନ ଧ୍ୱଂସକରି ଯାଇ । ୪୫ ।
ରାଜେନ୍ଦ୍ର ଯୋଗେନ୍ଦ୍ର ଘରେ ନ ରହିବ ସତ ।
ଏଣୁକରି କଳିଯୁଗ ହୋଇବଟି ହତ ॥
ରାଜାମାନେ ଭଣ୍ଡି ନେବେ ପରଜାର ଧନ ।
ଗୁରୁମାନେ ଶିଷ୍ୟଠାରେ ଲୋଭେ ଦେବେ ମନ ॥
ମନ୍ତ୍ର ଯନ୍ତ୍ର ପଢ଼ିଶଲେ କରିବେ ଯେ ହିଂସା ।
ପେଟର ଜମକେ ବୁଲି ଦେଶେ ଦେଶେ ଆଶା ॥
ରାଜାମାନେ ସତ୍ୟଶାସ୍ତ୍ରମାନ ନ କହିବେ ।
ପଞ୍ଚା ଦେଇ ପରଜାଙ୍କୁ ଦୁଇଗୁଣ ନେବେ ॥
ମଦିରା ପାନ କରିବେ ବ୍ରାହ୍ମଣ କ୍ଷତ୍ରିୟ ।
ଦେବୀ ପୂଜା ବୋଲିଣ ସେ ମିଳିବେ ଶୂଦ୍ର ସ୍ୱ । ୫୦ ।

---

୫୦—୨=ଭକ୍ଷିବେ ଅମିସ୍ୱ—ଗ ।

ଏଣୁକରି ଘରେ ଘରେ କଳି ପାପ ହେବ ।
ବ୍ରାହ୍ମଣ ମଦ୍ୟପାନେ ସର୍ବ ଭ୍ରଷ୍ଟ ଯିବ ॥
ଇନ୍ଦ୍ର ନ ପାଳିବ ସେ ଯେ ବେଳକାଳ ଜାଣି ।
ପୃଥ୍ୱୀରେ ଜନଙ୍କୁ ଜନ ମନ୍ୱନ୍ତର ଟାଣି ॥
ଓଡ଼ିଶା ତେଲଙ୍ଗ ଦକ୍ଷୀ ମରହଟ୍ଟା ଦେଶ ।
ଠାବେ ଠାବେ ହଣା ଯୁଦ୍ଧ ହୋଇବ ବିଶେଷ ॥
ଏ ଦେଶର ଲୋକ ଯାଇଁ ସେ ଦେଶେ ପଶିବେ ।
ପେଟର ବନ୍ଧନେ ସର୍ବେ ଛଟପଟ ହେବେ ॥
ହୋଇବ ଅନର୍ଥ ଯନ୍ତ୍ରୁଁ ସକଳ ଆବର୍ତ୍ତ ।
କଲଙ୍କୀ ପ୍ରବେଶ ହେବେ ଓଡ଼ିଶା ଦେଶେ ତ । ୬୫ ।
ତେବେ ବା ସଂସାରେ ସୁଖ ହୋଇବାକ ପୁଣ ।
ବିପ୍ର ଧରିଇବ ଛନ୍ଦ ଯେଉଁଦିନେ ଜାଣ ॥
ତେତେଦିନ ଯାଏ ପ୍ରାଣୀ ଦୁଃଖରେ ପଡ଼ିବେ ।
ତପତ ଜଳରେ ମୀନ ପ୍ରାୟେକ ବଞ୍ଚିବେ ॥
କଳିଯୁଗ ଚରିତ ଏ ମନ୍ଦକର୍ମ ଯେତେ ।
ମନ୍ଦକର୍ମ କଲା ଲୋକ ଭଲ ଏ ଜଗତେ ॥
କିନ୍ତୁ ଦିନ ଭଲ ହେବ ପୁଣ୍ୟ ନାଶ ଯିବ ।
କଳିଯୁଗ ମାୟା ସେ ଯେ ଜାଣି ନ ପାରିବ ॥
ଧନପଣ ଜନ ହାଦେ କଳିଯୁଗେ ମନ୍ଦ ।
କିନ୍ତୁଦିନେ ସେହୁ ପୁଣ ପଡ଼ିବେ ଯେ ଦ୍ୱନ୍ଦ୍ୱ ॥ ୭୦ ॥
ପ୍ରାଣୀମାନେ କହୁଥିବେ ମନ୍ଦ କଥାମାନ ।
ସଂସାରରେ ଉତ୍ତମ ହୋଇବେ ସେହୁ ଜନ ॥
କଳିଛନ୍ଦ ବିଡ଼ମ୍ବଣ ନ ଜାଣି ଦମ୍ଭେ ତ ।
ସମସ୍ତଙ୍କୁ ବିଡ଼ମ୍ବଣ ସକଳ ହେବ ତ ॥

---

୫୯—୨ = ଧର୍ମ ନାଶ ହେବ—ଗ ।
୭୧—ପ୍ରାଣୀମାନେ କହୁଥିବେ ମନ୍ଦ କଳ ଜଣ ।
ସଂସାରେ ଉତ୍ତମ ହୋଇଲା ଏହୁ ପୁଣ—କ

ସମୁଦ୍ର ଲହରୀ ପ୍ରାଏ କହୁଥିବ ଶୋଷ ।
କେଣେ ନାଶ ଯିବ ସେ ତ ନ ରହିବ ପ୍ରସ୍ଥ ॥
ସାତ ଯଡ ସଂସାରରେ ଶୀଘ୍ର କ୍ଷୀଣ ଥିବେ ।
ବଦ୍ଧାନ ହୋଇବେ ସେହୁ ମର୍ତ୍ତ୍ୟ କଳିଯୁଗେ ॥
ଖଚୁଆ ମିଛୁଆ ଆପୁଧୂଆଁ ଯେ ପାହସୀ ।
ପରସ୍ତ୍ରୀ ହରଣ ଯେ ଦଣ୍ଡାଭଙ୍ଗା ବୃଷୀ ॥
ଅଗାଡ଼ ଅଟନ୍ତି ଏହୁ କଳିର ଅସୁର ।
ମର୍ତ୍ତ୍ୟ କଳିଯୁଗେ ଏହୁ ନ ଥିବେ ସଂସାର ॥
ସତ ଯଡ ପ୍ରାଣୀମାନେ କଳିରେ ବନ୍ଧନ ।
ଅଚ୍ୟୁତ ବଚନ ଏହୁ ହେତୁ ମନେ ଘେନ ॥
ଏଣୁ ଗୁରୁଭକ୍ତ ଗୀତା ଅଟଇ ଗୁପତ ।
ନ ମାନିବେ ପ୍ରାଣୀମାନେ କରିବେ ହାସ୍ୟତ ॥
ଅସତ୍ୟ ଜନ ବଢ଼ିବେ ସଂସାରେ ବହୁତ ।
ଏକ ଏକ ଥିବେ ପୁଣ ନର ଯଡ ସତ ॥
ଏହୁ ଗୁରୁଭକ୍ତ ଗୀତା ଦ୍ୱିତୀୟ ଖଣ୍ଡରେ ।
ଅଂଶସ୍ଥାନ କଳିଯୁଗ କହିଲୁ ତୁମ୍ଭରେ ॥

ଇତି ଶ୍ରୀ ଗୁରୁଭକ୍ତଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟ ବୋଧନେ ନାମ ଷଷ୍ଠଦଶ ପଟଳ ।



# ସପ୍ତଦଶ ପଟଳ

ହନୁମାନ ! ପବନ ଯେ ଆନନ୍ଦ ଗୋବିନ୍ଦ ତ ।
ପସୁରୁଙ୍କୁ ଗୁରୁଦେବ ରହିଲ ଥୋକେ ତ ॥
ରାମଦାସ ବାରଜଣ କହିଲେ ତ ଅଂଶ ।
ପଞ୍ଚଶାଖା ମିଳିଣ ଯେତେକ ଅଂଶାଅଂଶ ॥
ସପତ ଶାଖାରେ ପୁଣ କହଇ ଗୁରୁ ତ ।
କେମନ୍ତ ହୋଇଣ ସେ ସେ ସଂସାରେ ହୁଦକ ॥
କୁମ୍ଭାର ରାମ ଦାସର ଅଂଶ ତ ନୋହିବ ।
କମାର ରାମର ଅଂଶେ ଜନ୍ତରେ ମଜ୍ଜିବ ॥ •
ନନ୍ଦ ଯେ କମାର ନାରଣର ହେବ ଅଂଶ ।
କଅ ଯେ ଅକ୍ଷରେ ଛାପ ଲାଗିବ ବିଶେଷ ॥ ୫ ॥

ସାଲବେଗ ବଂଶେ ନଗ୍ନ କୁଣ୍ଡ ବଳଦାରେ ।
ଦେବୀନନ୍ଦାଗାରେ ମୃତ୍ୟୁ ହେବ ସେ ସ୍ଥାନରେ ॥
ଦକ୍ଷିଣ ଚନ୍ଦ ଯେ ବଇତରଣୀର ବଂଶେ ।
ରହିଣ ସମାଧି ସ୍ଥାନ ବାସୁଦେବର ଦେଶେ ॥
ଦକ୍ଷିଣ ଅଂଶର ପ ଅକ୍ଷରେ ପୁଙ୍ଗ ଜାତ ।
ପରମାନନ୍ଦ ଠାବରୁ କଳାରେ ଆଗତ ॥
ନିରଞ୍ଜନ ପୁଣ ସେହୁ ଗ୍ରାମରେ ରହଣି ।
ମଧୁଠାରୁ ଅଂଶ ପୁଣି ଗୁପତଟି ଜାଣି ॥
ନନ୍ଦ କନ୍ଦ ମୀର ଯେ ଦକ୍ଷିଣ ଚନ୍ଦନଣେ ।
କମାର କୁମ୍ଭାର ମିଶି ଏତୁ ସପ୍ତ ପୁଣ । ୧୦ ।

ରସିବ ଯେ ବାର ପରେ ବାରଟିଆ ପାର ।
ସ୍ୱରୂପ ଯୋଗାରୂଢ଼ ପଞ୍ଚସଖାଙ୍କର ॥

ଏଣୁ କଣ ଅଚ୍ୟୁତରେ ଷୋଳସହ୍ର ଶାଖା ।
ଯୁଗେ ଯୁଗେ ଅବତାର ଭଚତରେ ଲେଖା ॥
ଷୋଳସହସ୍ରେ ସାର ବାରଟିଆ ଗ୍ରମଦାସ ।
ବାର ଦାସେ ସାର ସପ୍ତଶାଖା ଅଛେ ଅଂଶ ॥
ସପ୍ତଶାଖା ବଂଶ ସାର ପଞ୍ଚଶାଖା ପୁଣ ।
ପଞ୍ଚଶାଖା ସାର ପୁଣ ଅଚ୍ୟୁତରେ ଗଣ ॥
ସୁଦାମା ଗୋପାଳ ନାମ ଦ୍ୱାପରେ ଯେ ହୋଇ ।
ତ୍ରେତୟା ଯୁଗରେ ନାମ ନଳ ମୁଁ ବୋଲାଇ । ୧୬ ।

ସତ୍ୟ ଯୁଗେ ନାମ ମୋର ହୋଇଲେ କୃପାଜଳ ।
ଅନନ୍ତ ଯୁଗରେ ଶୁଭନନ୍ଦ ଯେ ଗୋପାଳ ॥
ଯୁଗେ ଯୁଗେ ଜାତ ଆମ୍ଭ ସଙ୍ଗେ ବାରଦାସ ।
ସନ୍ନ୍ୟାସ ଲୀଳାରେ ଆମ୍ଭେ ହେଉଁ ପରବେଶ ॥
ଅନନ୍ତ ଯୁଗରେ ଗ୍ରମ ସଙ୍ଗେ ତଳି ବାଇ ।
ଗ୍ରମତାଳରେଣଟି ଅନନ୍ତ ଯୁଗ ବାନ୍ଧ ॥

ସତ୍ୟଯୁଗେ ଋଷି ମେଳେ ନାମ କୀର୍ତ୍ତନ ।
ନୈମିଷାରଣ୍ୟରେ ଯେ ଯେ ଗୁପତେ ରହଣ ॥
ତ୍ରେତୟା ଯୁଗରେ ଗ୍ରମ ସଙ୍ଗେ ତାଣ୍ଡବରେ ।
ନୃତ୍ୟ ଗୀତ କରୁ ହନୁ ନଳ ନୀଳ ମେଳେ । ୨୦ ।

ଦ୍ୱାପର ଯୁଗରେ ତୁମ୍ଭେ ଅଷ୍ଟାଦଶ ମେଳେ ।
ସନ୍ନ୍ୟାସ ଲୀଳାରେ ଥିଲ ତୁମ୍ଭେ କୁତୂହଳେ ॥
କଳିଯୁଗେ ଶ୍ରୀକୃଷ୍ଣ ଚୈତନ୍ୟ ରୂପେ ଜାଣ ।
ପ୍ରତ୍ୟକ୍ଷେ ଦର୍ଶନ କଲ ଚର୍ମର ନୟନ ॥
ସେ ତୁମ୍ଭଙ୍କୁ ଦେଲେ ଖୋଳ କରତାଳ ଯେଣୁ ।
ଓଡ଼ିଶାରେ ସନ୍ନ୍ୟାସ ରହିଲ ତୁମ୍ଭେ ତେଣୁ ॥

ପ୍ରତାପରୁଦ୍ର ଆଗ୍ରେ ଗଲେ ପିତାଙ୍କର ବଳେ ।
ସନ୍ନ୍ୟାସ ରହିଲୁ ଆମ୍ଭେ ଓଡ଼ିଶା ଦେଶରେ ॥

ରାମଚନ୍ଦ୍ର ବଳେ ପୃଥ୍ୱୀ ହୋଇଲା କଳଣ ।
ରାହାସ ରଖିଲ ତୁମ୍ଭେ ସାରଦା ଭୁବନ । ୨୫ ।

ଏଣୁକରି ସରସ୍ୱତୀ ତୁମ୍ଭଙ୍କୁ କରୁଣା ।
ଗୀତ ନୃତ୍ୟ ତୁମ୍ଭଙ୍କୁ ଯେ ଦର୍ଶିଲା ବାଜଣା ॥
ସକଳ ମନ୍ତ୍ରର ଗୁରୁ ସାରଦା ଅଟନ୍ତି ।
ତାହାଙ୍କର ପ୍ରସନ୍ନେ ତୁମ୍ଭଙ୍କୁ ନାହିଁ ଭ୍ରାନ୍ତି ॥

ଏଣୁକରି ଦେଶ ଗ୍ରାମ ସମସ୍ତ ତୁମ୍ଭର ।
ସର୍ବଜନ ପୂଜୁଥିବେ ତୁମ୍ଭ ଅଂଶ ନର ॥
ନୂଆ ହାଣ୍ଡି ନୂଆ ଅନ୍ନ ତୁମ୍ଭେ ତ ପାଇଲ ।
ମାଛ ନାସ୍ତି ମାଂସ ନାସ୍ତି ଧର୍ମକୁ ଭଜିଲ ॥
ଅଶୁଚଘରେ ଭୋଜନ ତୈଳ ନଶୋଧନ । •
ଶୁଦ୍ଧ ଶ୍ରାଦ୍ଧ ବର୍ଜାଲ ତୁମ୍ଭର ନାହିଁ ଧନ । ୩୦ ।

ଏତେ ସ୍ଥାନେ ହସ୍ତେ ରାନ୍ଧ କଲ କୃଷ୍ଣ ଭୋଗ ।
ଶେ ପାଳ ଗରୁଡ଼ ସିନା ଅଟ ମାୟା ଅଙ୍ଗ ॥
ଏଣୁକରି ଗୋପକୁଳେ ତୁମ୍ଭେ ସାର ହୁଅ ।
ଖୋଲ କରତାଳ ଚୁଳି ଧର ତୁମ୍ଭ ଦେହ ॥
ଶୁଣ ହେ ମୁକୁନ୍ଦ ଦାସ ଅନନ୍ତ ଯେ ଦୁଇ ।
କଳିଯୁଗେ ଥୋକେ ଅଂଶ ଧରିବେ ବଢ଼ାଇ ॥
ମତାମତ ଦେଖ ଦେଖି ହୋଇଣ ମାତବେ ।
ଖୋଲ କରତାଳ ବନ୍ଧ ଅଭକ୍ଷ ଭକ୍ଷିବେ ॥
ଅବାର୍ଯ୍ୟ ଅବଂଶ ଲୋକେ ଶିଖିବେ ସତନ ।
ଅନ୍ୟାୟମାନ କରିବେ ବନ୍ଧ ବସ୍ତ୍ର ଚିହ୍ନ । ୩୫ ।

ଚକ୍ର ଅଟେ କରତାଳ ଶଙ୍ଖ ଖୋଲ ଅଂଶ ।
ଗଦା ଅଟେ ମୁରଲୀ ଯେ ପଦ୍ମ ଯେ ତରାପ ॥
ଏ ଚତୁର୍ଥ ମୂଧ ବନ୍ଧ ମାଛ ମାଂସ ଖାଇ ।
ଆଦୁ ଗଞ୍ଜା ଧୂଆଁ ପାନ ପରଦାସ ହୋଇ ।

ଏଥି ପ୍ରବେଶ ହୋଇଣ ଗ୍ରହାସେ ମିଶଇ ।
ଅଳପ ଆୟୁଷେ ମୃତ୍ୟୁ ଦାରିଦ୍ର୍ୟ ଘୋଟଇ ।।
ଖୋଡ଼ ରୋଗ ବଂଶନାଶ ପ୍ରାପତ ଅଙ୍ଗରେ ।
କୁଷ୍ଠ ର ଅସୁଧ ବନ୍ଧ୍ୟ ଅନାଥ ଯେ କରେ ।।
ନିର୍ମଳ ଭଜନ କଲ ନିର୍ମଳ ଭୋଜନ ।
ନିର୍ମଳ ଚିତ୍ତେ ଧରିଲ ତୁମ୍ଭେ ବାରଜଣ । ୪୦ ।

ଦେଖ ଘୋର ସଂସାରରେ ନୋହିଲ ସଙ୍ଗତ ।
ଉଦାସୀର ବସ୍ତ୍ର ତୁମ୍ଭେ ହେଲ ବାର ଚିହ୍ନ ।।
ଅଚ୍ୟୁତ ପଥରେ ବାର ଦାସ ଯେଉଁ ଜନ ।
ପରମ ଗୁରୁ ସେବିଲେ ଦ୍ୱାପରେ ଗୋପାନ ।।
ସତ୍ୟ ଗୁପ୍ତ ଏହି ଗୁପ୍ତ ଗୋପ୍ୟାନ କରିବ ।
ଉକଟ କଲେଣ ତାର ବଂଶ ନାଶ ଯିବ ।।
ଖେଚୁଆ ମିଛୁଆ ଆଗେ ନ କହିବ ଏହା ।
ରାମଚନ୍ଦ୍ର କହୁଛନ୍ତି ମୁକୁନ୍ଦଙ୍କୁ ଯାହା ।।
ପୃଷ୍ଠକଷ୍ଟ ଭଣ୍ଡକଷ୍ଟ ମନକଷ୍ଟ ତନ ।
ଆପକଷ୍ଟ ଗୃହକଷ୍ଟ ବନ୍ଧୁ ହୋଇବେ ହାନ । ୪୫ ।

ଗୁପତୁଁ ଗୁପତ ଏହା ନ କହିବ କାହିଁ ।
ଅଚ୍ୟୁତ ବଚନ ଯେହୁ ପ୍ରତିପାଳି ଥାଇ ।।
ଜନ୍ମେ ଜନ୍ମେ ମୁହିଁ ପୁଣ ଭୃତ୍ୟପଣେ ଥିଲି ।
ପୂର୍ବଜନ୍ମେ ଗୋପାଳ କୁଳରେ ଜନମିଲି ।।
ଲୀଳାକୁ ଲୀଳା ଯେ କରି ଝିଲେଚନେ ଜାତ ।
କେଶବ ନାମ ବହିବ ବିରଜା ଦେଶେ ତ ।।

ମୋହର ଅଂଶରୁ ଅଂଶ ଅକ୍ଷରୁ ଜାତ ।
ନାମ ନାହିଁ ଅନାମରେ ନାମ ମୋ ଅଚ୍ୟୁତ ।।
ମୋହ ଅଂଶମାନେ ସବୁ ଗୋଳକରେ ପିଢ଼ିବେ ।
ଗୋଲକୁଣ୍ଡା ଭାବରେ ସେ କନ୍ତୁହନ ଥିବେ । ୫୦ ।

ସାଧୁଙ୍କ ବଚନ ଯେବେ ଅପ୍ରମାଣ ହୋଇ ।
ପର୍ବତ ଶିଖରେ ପୁଣ ଫୁଟିବଟି କଇଁ ॥
ଏଣୁକରି ଏହୁ ଗ୍ରନ୍ଥ ଗୋପ୍ୟରେ ରଖିଲେ ।
ଏ ଗ୍ରନ୍ଥ ଶୁଣି ନ ପାରୁ ପେଟରେ ମଲ୍ଲେ ॥
ଏ ଗ୍ରନ୍ଥକୁ ଅତଗୂଢ଼େ ଗୋପ୍ୟରେ ରଖିବ ।
ଏକାକ୍ଷର ଅଣାକ୍ଷର ଯେହୁ ଜାଣିଥିବ ॥
ଏକ ଦୁଇ ତିନ ପାଞ୍ଚ ଗ୍ରନ୍ଥ ଶୁଣି ମୁହିଁ ।
ଗୁଆ ଘୃତ ଦୀପ ଦୂବ ନଇବେଦ୍ୟ ଦେଇ ॥
ଯାହାକୁ ଆଜ୍ଞା ହୋଇବ ଏ ଗ୍ରନ୍ଥ ସେ ଶୁଣେ ।
ଅଚ୍ୟୁତ ବଚନ ସେହୁ ସତ୍ୟ ସତ୍ୟ ଜାଣେ । ୫୫ ।
ଗୁରୁଭକ୍ତି ଗୀତା ଏହୁ ଦ୍ୱିତୀୟ ଖଣ୍ଡେଣ ।
କହିଲି ବଂଶାନୁକଥା କର୍ଣ୍ଣ ଦେଇ ଶୁଣ । ୫୬ ।

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟବୋଧନେ
ଯୁଗବଂଶାନୁଚରିତ-ଲୀଳା-ବର୍ଣ୍ଣନେ ନାମ ସପ୍ତଦଶ ପଟଳ ।

---

# ଅଷ୍ଟାଦଶ ପଟଳ

ଶୁଣ ହେ ମୁକୁନ୍ଦ ଦାସ ଅନନ୍ତ ସେ ଦୁଇ ।
ପବନ ଯାଦବ ବେନି ଅଭିନ୍ନ ତ ନୋହି ॥
ଉତ୍‌ଥାନ ପତନ ତୁମ୍ଭେ ଏକପ୍ରାଣ ବୋଲି ।
ବାଳକ ଗୋବିନ୍ଦ ଦୁହେଁ ତୁମ୍ଭେ ଥାଅ ମିଳି ॥
ବସ୍ତ୍ର ଯେ ମଥୁର ତୁମ୍ଭେ ନିରନ୍ତରେ ସାଥ ।
ବାଳକ ଯେ ବୃନ୍ଦାବନ ଅନ୍ତର ନୁହଁ ତ ॥

ମଧୁ ଯେ ଆନନ୍ଦ ଦୁହେଁ ଏକଇ ଜୀବନ ।
ଏହି ବାରଜଣ ଯେନ ଅଚ୍ୟୁତ ବଚନ ॥
ଯେତେ ଗ୍ରନ୍ଥ କହିବ ନିତେତେକ ଶୁଣାଇବ ।
ଅଧିକ କହି ଶୁଣିଲେ ଉତ୍ତମ ନୋହିବ ॥
ନିତି ଯେ କଦଳୀ ଘୃତ ଦୀପ ବନ୍ଦାଇବ ।
ନବତନ ବସ୍ତ୍ର ଯୋଇ ଏ ଗ୍ରନ୍ଥ ଶୁଣିବ ॥
ଗୁରୁବାରେ ସୋମବାରେ ମଙ୍ଗଳ ଯେ ଦିନ ।
ଶୁକ୍ଳ ତିଥିରେ ଶୁଣାଇବ ସାଧୁଜନ ॥
ଜ୍ୟେଷ୍ଠ ଯେ ଚଇତ୍ର ପୁଷ ନିଷେଧ କରିବ ।
ନବତନେ ଶୁଣାଇ ଯେ ନବମାସେ ଦେବ ॥

ଶୁଣ ଆହେ ରାମ ଦାସ ତୁମ୍ଭେ ବାର ପୋଏ ।
ଖୋଳ କରତାଳ ଗୁଣ କଳନା ନ ଯାଏ ॥
କଳିଯୁଗେ ଯେଉଁ ଜନ କହିବ ସୁଚିତ୍ରେ ।
ମନ୍ତ୍ର ପୂଜା କରିବାକୁ ଯେନିଥିବ ଚିତ୍ରେ ॥
ସେ ଜନ ସକଳଠାରେ ଯଶ ପୁଣ ହେବ ।
ରାଜସିଂହାସନେ ବସି ସୁଖେ ବିହରିବ ॥

ଶୁଣ ହେ ଗୋପାଳ ଦାସ ତୁମ୍ଭେ ବାରଣ୍ଟିଆ ।
ଗୋଲଗ ଆୟୁଧ ଧର ଦୃଢ଼ ମନେ ଏହା
ଏମନ୍ତ ହୃଦରେ ଧର ପାପ କରେ ନାଶ ।
ପରଧନ ପରସ୍ତ୍ରୀ ନ କରିବ ଆଶ ॥
ଶୁଣ ଆହେ ସୁହାସ ପ୍ରଧାନ ବାର ତୁମ୍ଭେ ।
ତୁମ୍ଭଙ୍କୁ କହିଲୁ ଆମ୍ଭେ ଭଗତ ଆରମ୍ଭେ ॥

—: ଏଠାରେ ପଣ୍ଡ ବୋଲିଲେ —

ଗୁରୁଭକ୍ତିଗୀତା ପ୍ରଥମ ଖଣ୍ଡ ଶୁଣିବ ।
ଏଠାରେ ମୁକୁନ୍ଦ ଦାସଙ୍କୁ ପୂଜାଦେବ ॥
ଗୁରୁଭକ୍ତି ଗୀତା ଦ୍ୱିତୀୟ ଖଣ୍ଡ ଶୁଣିବ ।
ଏଠାରେ ଉତ୍ଥାନ ଦାସଙ୍କୁ ପୂଜା ଦେବ ॥
ଦ୍ୱାପରେ ତୁମ୍ଭ ଆମ୍ଭର ନାହିଁ ଭିନ୍ନାଭିନ୍ନ ।
ସୁହାସ ରସରେ ତହିଁ ଗଲା କଟୁଦିନ ॥
ତୁମ୍ଭେ ଆମ୍ଭେ ଏକ ଆତ୍ମା ଜୀବର ଜୀବନ । ପଣ୍ଡ ।

ଗଜପଲଙ୍କ ଉପରେ ଶ୍ରୀକୃଷ୍ଣ ବିଜେ କରି ।
ଆଲଟ ସେବା କରୁଛନ୍ତି ଉତ୍ଥାନ ଯେ ଧରି ॥
ଦୁଇ ସହସ୍ର ଗୋପାଳ ମିଳି—
ବୀଣା ତାଳ ବାଇ କରନ୍ତି କେଳି ।
ଗୁରୁଭକ୍ତିଗୀତାରୁ ପ୍ରଥମଖଣ୍ଡ ଅଧେ ଶୁଣିବ ।
ଯେ ଜନ ପଢ଼ିବ ଏଠାରେ ଅନନ୍ତ ପୂଜା ଦେବ ॥
ବନେ ବିହାର କରି ଶ୍ରୀକୃଷ୍ଣ ଯେତେବେଳେ ;
ମୁକୁନ୍ଦ ସେବା କରେ ହରଷେ ତେତେବେଳେ ॥
ବେନ ସହସ୍ର ଗୋପାଳେ ଗୁରୁଭକ୍ତିଗୀତା ତୃତୀୟ ଖଣ୍ଡ ଶୁଣିବ

ପଣ୍ଡ

ପବନଙ୍କୁ ପୂଜା ଦେବ ।

## ଗୀତ

ଶୁଣ ହେ ହୃଦାସୀ ଦାସ ସଂସାର-କାରଣ ।
ଜନମ ଲଭିବ ତୁମ୍ଭେ ଏହୁ ଯେ କାରଣ ॥
ଚୂଳ କେଶ ବନ୍ଧିଲେ ଯେ ଦୁଃଖ ନ ଥାଇ ।
ମିଛ ନ କହିବ ମୁଖେ ଶାନ୍ତଚିତ୍ତେ ରହି ॥
ଶୁଣ ହେ ଦ୍ୱାଦଶଜନ ହେବୁ ଚଣ୍ଡି ହୋଇ ।
ତୁମ୍ଭେ ବାରଜଣ ଅଟ ଆମ୍ଭ ଶଖାସାଇ ॥
କଳିଯୁଗେ ଗୁରୁଶିଷ୍ୟ ଲୋଭର କାରଣେ ।
ଅପଚ୍ୟ ଦ୍ରବ୍ୟକୁ ଚିତ୍ତେ ନ କରିବେ ଷଣେ ॥
ଶୁଣ ଆହେ ବ୍ରଜଜନ ଗୁପତ ଯେ ଜନ୍ମ ।
ଓଡ୍ରରାଷ୍ଟ୍ରେ ତୁମ୍ଭର ଯେ ରହିଥିବ ନାମ ॥

## ପଦ ।

ଡାଳ ବନେ ବିହାର ଯେ ଶ୍ରୀକୃଷ୍ଣ କରନ୍ତେ ।
ପବନ ଦାନ ହେ ବଯେ କେଦୀ ଯେନ ହସ୍ତେ ॥
ସହସ୍ର ଗୋପାଳ ହୋଇଣ ସଙ୍ଗ ।
ଷଷ୍ଠଜନୀ ତାଳ ଗୀତ ନାନାରଙ୍ଗ ॥

## ଗୀତ ।

କଳିଯୁଗେ ଧୂମ୍ରପାନ ସମସ୍ତେ କରିବେ ।
ଧୂମ୍ରପାନ କଲେ ଗୁରୁ ଜଳ ନ ପାଇବେ ॥
ପିତୃଲୋକମାନେ ତାର ନ ପାଇବେ ଜଳ ।
ଦୁର୍ଗନ୍ଧ ଅଟଇ ସେହୁ କରିଥିବେ ପର ॥

## ପଦ ।

ଗୁରୁଭକ୍ତ ଗୀତା ତୃତୀୟଖଣ୍ଡ ଶୁଣିବ ।
ଯେ ଜନ ଧନ ଲୋଭେ ପଡିବ ।
ଏଠାରେ ଆନନ୍ଦକୁ ପୂଜା ଦେବ ॥

ଚଥଃଚ :—

ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡ ଶୁଣିବ ।
ଖଣ୍ଡରୁ ଅଧେ ଶୁଣି ଗୋବିନ୍ଦକୁ ପୂଜା ଦେବ ॥
ଗୋବିନ୍ଦ ଚରଣେ ସେବା କରଇ ।
ସହସ୍ରେ ଗୋପାଳ ତା ସଙ୍ଗେ ଥାଇ ॥
ଶଙ୍ଖ ମୁରଲୀ ମୃଦଙ୍ଗ ବାଜଇ-ନୃତ୍ୟ କରଇ ।
ଏଠାରେ ମଥୁନ୍ଦିକୁ ପୂଜା ଦେବ ।
ଶୁଣ ହେ ହରଷ ହୋଇ ଏକମନ କରି ।
ଗୋପାଳ କୁଳରେ ଜାତ କଲେ କି ସେ ହରି ॥
ଗୋପାଳ କୁଳକୁ ତାର ତୁମ୍ଭେ ଅଟ ଗୁରୁ ।
ସହସ୍ର ପ୍ରଧାନ ସେ ତୁମ୍ଭଙ୍କୁ ସେଣୁ କରୁ ॥
ତୁମ୍ଭଙ୍କୁ ସ୍ମରିଣ ସେହୁ ସିଦ୍ଧ ସେ କରିବ ।
ମାଛ ମାଂସ ତେଜଣ ଯେ ସ୍ନେହ ସେ ମଜ୍ଜିବ ॥

ପଢ଼ :—

ହେମ ବନେ ବିଜୟେ କଲେକ ବନମାଳୀ ।
ଆନନ୍ଦ ଦାସ ତହିଁ ସ୍ମର ସେ ତାଳି ॥
ରସିକ ସହସ୍ର ଗୋପାଳ ସେ ମେଳେ ।
ବୀଣା ତାଳେ ଖୋଳ ବାଦନ୍ତ ହେଲେ ॥
ଗୁରୁଭକ୍ତ ଗୀତାରୁ ତ୍ରୟୋଦଶନ ଶୁଣିବ ।
ଏଠାରେ ବୃନ୍ଦାବନ ଦାସ ପୂଜା ଦେବ ॥
କଳିଯୁଗେ ତୁମ୍ଭେ ତାର ପ୍ରଭୁର ସେ କର ।
ତୁମ୍ଭ ଦେଖାଦେଖି ଯେ କେ ଶିଖିବେ ସେ ନର ॥
ସ୍ନେହ ସେ ପଶିଣ ଯେ ତୁମ୍ଭଙ୍କୁ ନ ସୁମରି ।
ସହସେ ମିଶିଲେ ଯେହ୍ନେ ଧାନରେ ଅଗାଡ଼ି ॥
ତୁମ୍ଭଙ୍କୁ ସୁମରି ଯେବେ କରିବେ ସହାସ ।
ତୁମ୍ଭେ ଅଟ ଗୋକୁଳେ ଶ୍ରେଷ୍ଠ ତାର ଶିଷ୍ୟ ॥

ପଦ୍ଦ :—

କୁମୁଦ ବନରେ ଯେ ବଜେ କରି ହରି ।
ବାଳକ ଦାସେ ଭୋଜନ କରାନ୍ତି ଶ୍ରୀହରି ॥
ସଙ୍ଗତେ ସହସ୍ର ଗୋପାଳ ଧେନ ।
ବନ ଭୋଜ ସେବା ପରଶ ବେନ ॥
ଗୁରୁଭକ୍ତ ଗୀତା ଦ୍ୱିତୀୟ ଖଣ୍ଡ ବଡ଼ ଗମ୍ଭୀରେଣ ।
ଶ୍ରବଣ କରି ବସ୍ତ୍ର ଦାସଙ୍କୁ ପୂଜା ଦେବ ॥

ଗୀତ :—

ଶୁଣ ଏକମନ ହୋଇ କୃଷ୍ଣସଙ୍ଗ ଦାସ ।
ଦ୍ୱାଦଶ ଗୋପାଳ ଜାଣି ଶୂନ୍ୟ ଯେ ସହାସ ॥
ସତ୍ୟଯୁଗେ ଋଷିଜନ୍ମ ତ୍ରେତାରେ ବାନର ।
ଦ୍ୱାପରେ ଗୋପରେ ଲୀଳା କଲି ରାସ କର ॥
ଶୂନ୍ୟରାସ ଅନନ୍ତ ଯୁଗରେ ତୁମ୍ଭ ଧ୍ୟାନ ।
ସତ୍ୟଯୁଗରେ ଭଗବାନରେ ଦେଲେ ମନ ॥
ତ୍ରେତୟାରେ ଶ୍ରୀରାମ ସଙ୍ଗତେ ଲୀଳା କରି ।
ଦ୍ୱାପରେ ଶ୍ରୀକୃଷ୍ଣ ସଙ୍ଗେ ଚରାଇ ବାଛୁରି ॥
ସଙ୍ଗେ ବେଲବନେ ବଜେକଲେ ଯେ ଶ୍ରୀଧର ।
ବୃନ୍ଦାବନ ଦାସେ ପୂଜ୍ୟ ଦଏ ହଳଧର ॥
ଏକ ସହସ୍ରେ ଗୋପାଳ ସଙ୍ଗତେ ବିହାର ।
ମୁରଲୀ ବଜାଇ ଅତି ମଧୁର ॥
ଗୁରୁଭକ୍ତ ଗୀତା ଯତନେ ଶୁଣିବ ।
ଧନ ଜନ ପ୍ରାପତ ହୋଇବ ॥
ଏଠାରେ ପଢ଼ିଲେ ସୁଦାମ ପୂଜା ଦେବ ।

ଗୀତ :—

କଳିଯୁଗେ ଚୈତନ୍ୟ ଗୁଣ ମୁଖେ ଗାଅ ।
କଳଙ୍କୀ ବିହାର କରି ତୁମ୍ଭେ ବାରି ପୋଅ ॥

ଶୁଣିଣ ହରଷ ମନେ ଗୋପକୁଳ ମଣି ।
କଳିଯୁଗେନଷ୍ଟ ଭ୍ରଷ୍ଟ ହେବେ ସାଧୁ ପ୍ରାଣୀ ॥
ଚୌକରେ ବସିବେ ନରକକୁଣ୍ଡରେ ଗମିବେ ।
କମଳ କୁଣ ଆସନ ଦୂର କରି ଦେବେ ॥
ଦ୍ୱନ୍ଦ୍ୱେ ଛନ୍ଦେ ମଜ୍ଜିବେ ଯେ ଦୁଷ୍ଟପଣେ ଚଳି ।
ଏଥିରେ ନ ପଡ଼ ତୁମ୍ଭେ ଥିବ ବାରି ସୁତ ॥

ପଦ୍ଧ:—

କଦମ୍ବ ବନେ ଶ୍ରୀକୃଷ୍ଣ ବିଜୟ ସେ କରି ।
ବସ୍ତ୍ର ଦାସେ ପୁଷ୍ପ ସେବା କରନ୍ତି ଶ୍ରୀହରି ॥
ସହସ୍ର ଗୋପାଳ ସଙ୍ଗତେ ମିଳି । •
ତାଳ ବାଜଇ ଖେମଟା କୁଣ୍ଡଳୀ ॥
ଗୁରୁଭକ୍ତି ଗୀତା ସମାଧି ସାଧିବ ।
ଦ୍ୱିତୀୟ ଖଣ୍ଡ ଏଠାରେ ମଧୁଦାସଙ୍କୁ ପୂଜା ଦେବ ॥

ଗୀତ:—

କହିବା ଉତ୍ତମ କଥା ଗୁପତ ବଚନ ।
ହେତୁ କରି ଗୁପତେ ଘେନିବା ବାରିଜଣ ॥
କଳିଯୁଗେ ସମସ୍ତେ ହୋଇବେ ପୁଣି ଦାସ ।
ଗୁରୁଦୀକ୍ଷା ଏଡ଼ିଣ ସେ ମୁଁ କାର ପ୍ରବେଶ ॥
ମୁଁ କାର କରିଣ ସେ ଅଳପେ ନାଶ ଯିବେ ।
ପଦ୍ମେକ ଭଗତ ସେ ଯେ କଳଙ୍କୀ ସେବିବେ ॥

ପଦ୍ଧ—

କୁମୁଦ ବନେ ଯନ୍ତ ବିଜୟେ ଗୋବିନ୍ଦ ।
ସହସ୍ର ଗୋପାଳ ସଙ୍ଗତେ ରହେ ।
ଡିର୍କି ଡମ୍ବରୁ ସେ ତାଳ ବଜାଏ ।

ଗୁରୁଭକ୍ତ ଗୀତା ଯେବେ ଶୁଣିବ ।
ଦ୍ୱିତୀୟ ଖଣ୍ଡ ତବେ ରଖିବ ॥
ଏଠାରେ ଯ ଭକ୍ତଙ୍କୁ ପୂଜା ଦେବ ।

ଗୀତ—

କହୁବା କଥାସ୍ତେ ମନ ଦୃଢ଼ ହେଉ କର ।
ତଣ୍ଡରେ ରଚନା କର ତୁମ୍ଭେ ଛତ ନର ॥
ଅବର ଛତ୍ର ଜନର ନାହିଁ ବୀଜ ଲେଶ ।
ନପୁଂସକ ଶରୀର ସେ ବଇରାଗ ବେଶ ॥
ଭୃଙ୍ଗ ଗୁଞ୍ଜ ଚରିତ ସେ ଗୁହ୍ୟେ ରଖିଥାଇ ।
ତାହାର ତେଜରେ କାଳ ଘରେ ନ ପଶଇ ॥
ଖଣ୍ଡୀର ବନରେ ଯେବେ ଭଜେ ଦାମୋଦର ।
ମଧୁ ଦାସ ଫଳ ପକ୍ୱ ବୃକ୍ଷନ୍ତ ମୁଖର ।

ପଦ—

ଏକ ସହସ୍ର ଗୋପାଳ ଯେଜଣ ।
ମର୍ତ୍ତଲ ତାଳବନେ ନାରଦୀ ବାଲଣ ॥
ଗୁରୁଭକ୍ତଗୀତା ଯେ ଯତ୍ନ ବୁଝିବ ।
ପ୍ରଥମ ଖଣ୍ଡ ପାଠ ଚୂଡ଼ ଅଟେ ।
ଏଠାରେ ବାଳକ ଦାସ ପୂଜାଦେବ ।

ଗୀତ—

ଶୁଣ ଆହେ ସଙ୍ଗ-ଗତ ବାର ହେ ଗୋପାଳ ।
ସ୍ୱନ ଅଷ୍ଟ ମିଶି ସେ ଯେ ଅଟେ ବ୍ରଜସ୍ଥଳ ।
ସେ ବେଳ ଭୃଅଙ୍କ ବଂଶେ ତୁମ୍ଭେ ଥିବ ମନ୍ତ୍ରୀ ।
ତୁମ୍ଭ ଅଂଶେ ସମସ୍ତ ଗୋପାଳ ଥିବେ ରାଜା ॥
ବସ ବନ୍ଦାପନା ହେଉଁ ବାଂଧି ପକାଇବରେ ।
ଜୁହାର କରବ ତୁମ୍ଭେ ସାହାସ ରସରେ ॥

ମାଛ ମାଂସ ଆଦି ଗଞ୍ଜା ଧୂମ ଯେ ବଜର ।
ଏ ଜନ ଆଗରେ ଶାସ୍ତ୍ର ନ କର ପ୍ରସ୍ତୁତ ॥

ପଞ୍ଚ :—

ଶଙ୍ଖର ବନରେ ପଦ ଶୃଙ୍ଗାର ଅନନ୍ତ ।
ବଳଦେବ ପାଦ ସେବା ମାଧବ କରେ ତ ॥
ସହସ୍ର ଗୋପାଳ ଚୂଳବନ୍ଧେ ତୋଷେ ।
ମୁରଲୀ ସଙ୍ଗୀତ ମୃଦଙ୍ଗ ଘୋଷେ ॥

ଗୀତ :—

ପର ଧନ ପରସ୍ତ୍ରି ଯେ କରେ ହରଣ ।
ମିଥୁଆ ଜନଙ୍କୁ ଏହା ନ କର ଶ୍ରବଣ ॥
ଦାମ୍ଭିକ ମୁଁ କାର ପଣ ସେ ଜନ ଭଣଇ ।
ସେ ଜନ ଆଗରେ ଏହୁ ପାଠ ନ ପଢ଼ିବ ॥
ପଞ୍ଚାଙ୍ଗ ଅଷ୍ଟାଙ୍ଗରେ ଦ୍ୱାଦଶ ପ୍ରଣପାତ ।
ସେ ଜନକୁ ବୃନ୍ଦାବନ ମର୍ମ ସବୁ କହ ॥
ଶ୍ରୀଗୁରୁ ଦୂଷିତ ହେଲେ ତାଙ୍କ ହେବ ଶାସା ।
ସମାଧିରେ କୋଟି ଯେ ତାହାଙ୍କ ହେବ ଦେଶା ॥

ଷଷ୍ଠ :—

ଫଣିବନେ ଶ୍ରୀକୃଷ୍ଣ ବନସ୍ତେ ହଳଧର ।
ସୁଦାମ ଦାସ ଯେ ପୂର୍ଣ୍ଣ ଅନନ୍ତ ଧୀର ॥
ସହସ୍ର ଗୋପାଳ କରନ୍ତ ନାଟ ।
ମୃଦଙ୍ଗ ରବ ତ କରେ ଛଟାଟ ॥
ଏ ଷୋଳସହସ୍ର ବାଛି ପ୍ରଧାନ ।
ଶ୍ରୀକୃଷ୍ଣଲୀଳାରେ ନାମ ଗାୟନ ॥

ଏଠାରେ ପୂଜା ରତ୍ନାବଳୀ

---

ମୁଦ୍ରକ ପ୍ରକାଶ ରଥ ଭଟ୍ଟା—ର

## ଗୀତ :—

ପଦ୍ମେ ଭଗତମଧ୍ୟରେ ସେହୁ ଏକ ଜଣ ।
ଅଚ୍ୟୁତ ବଚନ ସ୍ନେହୁ ଗୁପତେ ବଖାଣ ॥
ଶ୍ରୀଗୁରୁଭଗତଗୀତା ପୂଜାର ବିଧାନ ।
ଗୁରୁବାରେ ପୂଜିବ ଯେ ଦେଇ ଭୋଗମାନ ॥
ଧନଜନ ପୁଣ ତାର ବର୍ଜନ ନୋହିବ ।
ଦ୍ୱାଦଶ ଗୋପାଳପୂଜା ଯେ ଜନ କରିବ ॥
ଦିନୁଁ ଦିନ ଧନ ଜନ ବଢ଼ଇ ତାହାର ।
ଗ୍ରହଙ୍କୁ ରଖି ପୂଜିଲେ କାଳ ହୋଏ ଦୂର ॥
ରୋଗ ଶୋକ ଦୂର ହୋଏ ଶ୍ରବଣେ ଶୁଣିଲେ ।
ଶ୍ରୀମୁଖ ବଚନ ଦାନ ଅଚ୍ୟୁତ କହିଲେ ॥

ଇତି ଶ୍ରୀ ଗୁରୁଭକ୍ତିଗୀତାୟାଂ ଦ୍ୱିତୀୟଖଣ୍ଡେ ଗୁରୁଶିଷ୍ୟସମ୍ବୋଧନେ
ପୂଜାବିଧିବର୍ଣ୍ଣନେ ନାମ ଅଷ୍ଟାଦଶ ପଟଳ ।
ଇତି ଦ୍ୱିତୀୟ ଖଣ୍ଡ ସମ୍ପୂର୍ଣ୍ଣ ।



ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ବର୍ଣ୍ଣ-ବିଦ୍ୟାଳୟ ପ୍ରେସ—୨୧।୫।୭୦-୧୦୦୦

